# ସମୟ କୁହେନା କିଛି

କବି

ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦ



ଲିପିକା
ନିଜିଗଡ଼ କୁରୁଖି, ହରିରାଜପୁର
ଜଟଣୀ, ପୁରୀ-୭୫୨୦୫୦

ସମୟ କୁହେନା କିଛି ▫ କବି: ଡ.ଫଣୀନ୍ଦ୍ର ଭୂଷଣ ନନ୍ଦ▫ ପ୍ରକାଶକ: ଲିପିକା, ନିଜିଗଡ଼ କୁରୁଖି, ହରିରାଜପୁର, ଜଟଣୀ, ପୁରୀ-୭୫୨୦୫୦, ମୋ : ୭୦୬୪୭୦୫୨୩୭ ▫ ପ୍ରଚ୍ଛଦ ଚିତ୍ର: ରମାକାନ୍ତ ସାମନ୍ତରାୟ ▫ମୁଦ୍ରଣ:ଜଗନ୍ନାଥ ଗ୍ରାଫିକ୍ସ, ଭୁବନେଶ୍ୱର-୨୨ ▫ ପ୍ରଥମ ପ୍ରକାଶ :୨୦୧୯▫ ମୂଲ୍ୟ :୧୫୦ଟଙ୍କା

---

**SAMAYA KUHENA KICHHI** ▫ **Poet : Dr. Fanindra Bhusan Nanda** ▫Publisher : **LIPIKA,** Nizigarh, Kurukhi, Harirajpur, Jatni, Puri-752050, Mob.: 7064705237 ▫**Cover Art:**Ramakanta Samantaray ▫First Edition: **2019** ▫ Price : **Rs. 150/-**

# ମୁଖଶାଳା

'ସମୟ କୁହେନା କିଛି' ମୋର ସପ୍ତମ କବିତା ସଂକଳନ । କବିତା ପଢ଼ିବା, ଶୁଣିବା ମସ୍‌ଗୁଲ ହେବା ଜନ୍ମାବଧି ଚାଲିଛି । କିନ୍ତୁ କବିତା ଲେଖିବାର କଳାତ୍ମକ କ୍ରିୟା ସପ୍ତମ ଶ୍ରେଣୀ ପଢ଼ିବା ସମୟରୁ ଆରମ୍ଭ ହୋଇଛି । ସେ କବିତା ଗୁଡିକ କବିତାର କେଉଁ ପ୍ରାରୂପରେ ଯିବ କହିବା କଷ୍ଟକର ତଥାପି ମୋତେ ଚିରନ୍ତନ ଆନନ୍ଦ ଦେବାରେ ସେଗୁଡିକ ଥିଲେ ସମର୍ଥ । ଏଣୁ ୧୯୬୬/୬୭ରୁ ଆରମ୍ଭ କରି ମୋର କବିତା ସୃଜନ ଏ ଯାବତ ବଳବତ୍ତର ରହଛି ଏବଂ ଜାରି ରହିଛି କବିତା ସହିତ ଛୁଁ ଛୁଁ କା ଖେଳ ।

ମୁଁ କବିତାରେ ବଞ୍ଚେ । ମୋ କବିତାର ମାଧ୍ୟମ ପ୍ରକୃତି ଓ ଜୀବନ । ପ୍ରେମ, ସ୍ନେହ ଓ ସାମାଜିକ ପ୍ରତିବଦ୍ଧତା ତାକୁ ବଳିଷ୍ଠ କରିଛି । କବିତାରେ ଅଛି ବୋଲି ଜୀବନର ଯାବତୀୟ ଅନିଭୋଗକୁ ସାମ୍ନା କରିଛି । ଭୋଗିଛି ସାହାସର ସହିତ । କବିତା ସମାଜର ବଡଦାଣ୍ଡରେ ସୁଦୃଢ କରିଛି ମୋର ସ୍ଥିତି । ମୋତେ ସାହିତ୍ୟକୁ ବୁଝିବାର ଅନୁଭବିବାର ଦେଇଛି ଅପୂର୍ବ ପ୍ରତୀତି । ସାହିତ୍ୟ ସମାଲୋଚନା ଓ ଗବେଷଣାର ରୁକ୍ଷ ପଥକୁ ପଲ୍ଲବିତ ଓ ପ୍ରାଣବନ୍ତ କରିଛି । ପ୍ରବନ୍ଧ ବା ଆଲୋଚନାଟିଏ ପ୍ରସ୍ତୁତ କଲାବେଳେ କବିତା ଅନ୍ତରଙ୍ଗ ପ୍ରତିବେଦନରେ ପୁଷ୍କଳ ଓ ସୌନ୍ଦର୍ଯ୍ୟପୂର୍ଣ୍ଣ କରିଛି ।

ପ୍ରଧାନପାଟ ହେଉ, ଖଣ୍ଡାଧାର ହେଉ ବା ମେଘାସନ ହେଉ ସବୁଠି ମୁଁ ଶୁଣିଚି କବିତାର ଅନୁରଣନ । ବ୍ରାହ୍ମଣୀ ହେଉ, ମହାନଦୀ ହେଉ ବା ଗଙ୍ଗା ହେଉ ସବୁଠି ପ୍ରତ୍ୟକ୍ଷ କରିଛି କବିତାକୁ । ଆକାଶ ହେଉ, ଅରଣ୍ୟ ହେଉ ବା ସମୁଦ୍ର ହେଉ ବିରାଟତ୍ୱର ତଲ୍ଲୀନତାରେ ପ୍ରକାଶ ପାଇଛି କବିତା । ଉଦ୍ଧାର କରିଥିବା ହରୀଣ ଶାବକଟିଏ, ବିଦ୍ୟୁତ ଆଘାତ ପ୍ରାପ୍ତ ଚିଲଟିଏ, ଲୋକଙ୍କ ପ୍ରହାରରେ ମୁମୂର୍ଷୁ ବୃହତ ଅଜଗରଟିଏ ଚାହାଁଣୀର ଇନ୍ଦ୍ରଜାଲରେ ମୋତେ ଅଭିଭୂତ କରିଛନ୍ତି । ତାଙ୍କର ଅବ୍ୟକ୍ତ ବେଦନା, ନିରୀହ ଚାହାଁଣୀ, କୃତଜ୍ଞତାର ଅକପଟ ଭାଷାରୁ ଝରିଛି କବିତାର ଧାରା ।

### ।। ସମୟ କୁହେନା କିଛି ।।

ରେଙ୍ଗାଲୀ ବନ୍ଧ ଯୋଜନା ଦ୍ୱାରା ନିଜେ ବାସଚ୍ୟୁତ ହେବା ସହିତ ହଜାର ହଜାର ବାସଚ୍ୟୁତ ଲୋକଙ୍କ ହାହାକାରକୁ ମୁଁ ଅଙ୍ଗେ ନିଭାଇଛି । ମୁଁ ଦେଖିଛି ମାଇଲ ମାଇଲ ବ୍ୟାପି ଅକ୍ଷତ ଜଙ୍ଗଲ ଉଜୁଡିବାର ଦୃଶ୍ୟ । ମୁଁ ଦେଖିଛି ଶହଶହ ଗାଁ ଭାଙ୍ଗିଯିବାର କରୁଣତା । ଜଳମଗ୍ନ ହେବାର ଭୟଙ୍କର ଦୃଶ୍ୟ ଭିତରେ ସ୍ୱପ୍ନ ପ୍ରେମ ସ୍ମୃତି ସଲୀଳ ସମାଧି ଘେନିବାର ପ୍ରତ୍ୟକ୍ଷ ଅନୁଭୂତି ମୋତେ କବିତାମନସ୍କ କରିଛି ।

ମୁଁ ପ୍ରଶ୍ନ କରିଛି କବିତା କେବଳ କ'ଣ ଶବ୍ଦ ଯୋଡିବାର ପ୍ରକ୍ରିୟା ? ସ୍ୱପ୍ନ ଝୁରିବାର ମାଧ୍ୟମ ? ପ୍ରେମ ପ୍ରତାରଣାର ଅଗ୍ନ୍ୟୁତ୍ସୋବ ? ମୁଁ ହରୀଣିର ଚାହାଁଣିରେ, ଗଛର ନିରବ ଇଙ୍ଗିତରେ, ଅଜଗରର କୃତଜ୍ଞତାରେ, ଚିଲର ସାମର୍ଥ୍ୟପୂର୍ଣ୍ଣ ଉଡାଣରେ କବିତାକୁ ଦେଖିଛି । ମୁଁ ଶୁଣିଛି ଗଛର କାନ୍ଦଣା, ମୁଁ ଶୁଣିଛି ବାଟବଣା ନଦୀର ଆକୁତି, ମୁଁ ଅନୁଭବିଛି ଧିରେ ଧିରେ ମୃତ୍ୟୁର ଶୀତଳ ଆଲିଙ୍ଗନକୁ ଆପଣେଇ ନେଉଥିବା ନଦୀ, ଅରଣ୍ୟ ଓ ପାହାଡର ଦୁଃଖକୁ । ଏଣୁ ମୋ କବିତା ମଣିଷର କଥା, ନଦୀର କଥା, ଅରଣ୍ୟ ଓ ପାହାଡର କଥା । କବିତା ଭିତରେ ଅସହାୟ ମଣିଷଟିଏ ଗଛ ସହିତ କଥା ହେଉଥାଏ, ଭବିତବ୍ୟର ବ୍ୟୁହ ରଚନା କରୁଥାଏ ।

ମୋର ଅଙ୍ଗେନିଭା ଅନୁଭୂତି ବିଭିନ୍ନ ରୂପରେ କବିତାରେ ଜୀବନ୍ୟାସ ପାଏ । ଜୀବନରେ ଭେଟିଥିବା ବିଭିନ୍ନ ଚରିତ୍ର କବିତାର ନାୟକ ନାୟିକା ହୋଇ ଆସନ୍ତି । ସେମାନେ ଝିଲିଙ୍ଗି,କଏରୁ, ଟର୍କି, ଚନ୍ଦ୍ରିକା, ପୀତପାଦ ହୋଇପାରନ୍ତି, ଚିଲିକା, ଅଂଶୁପା, ବ୍ରାହ୍ମଣୀ, ମହାନଦୀ ବା ଚନ୍ଦକା କି କାଳିଜାଈ ହୋଇପାରନ୍ତି । ଏମାନଙ୍କୁ ନେଇ କବିତାର ସାମ୍ରାଜ୍ୟ ବଢୁଥାଏ । ଆଗରେ ଉଡୁଥାଏ ପକ୍ଷୀଟିଏ, କଙ୍କିଟିଏ, ପ୍ରଜାପତିଟିଏ, ମୁଁ ପଶ୍ଚାତଧାବନ କରୁଥାଏ ଦୁଃଖର ବୋଝ ମୁଣ୍ଡାଇ । ଗୋଟିଏ ଚିତ୍ର ଗୋଟିଏ ମିଥ୍ ଗୋଟିଏ କାହାଣୀ ବିଭିନ୍ନ ପ୍ରେକ୍ଷାରେ ଚିତ୍ରିତ ହେଉଥାଏ । ପୁନରାବୃତ୍ତି ହେଉଥାଏ ଜୀବନର, ବର୍ଣ୍ଣନାର, ଶବ୍ଦର ତା'ଭିତରେ ବି ପ୍ରାଣର ସର୍ବୋତ୍ତମ ନିଷ୍ଠା ସର୍ବୋତ୍ତମ ଭଲ ପାଇବା ଫୁଟି ଉଠେ । ଦୁଃଖ ଦୁର୍ବିପାକ ଭିତରେ ନୂଆ ଏକ ଜୀବନର ସ୍ୱପ୍ନଦେଖା ଜାରି ରହେ । ଥୁଣ୍ଟା ଗଛ କଅଁଳେ ସୃଜନଶୀଳ ହୁଏ ପ୍ରକୃତି । ଆରକୂଳରେ ଥାଆନ୍ତି ନାଆ, ନାବିକ ଓ ପ୍ରେମିକା । ଏ କୂଳରେ କବିତା ଓ ମୁଁ । ଭରାନଈକୁ ଲଙ୍ଘିବାକୁ ନାଆ ନଥାଏ, ଶବ୍ଦ ନଥାଏ, ସାହାସ ନଥାଏ ଅଥଚ ଲଙ୍ଘି ଚାଲିଥାଏ କାଳନଦୀକୁ ତୀବ୍ର ବିକ୍ରମରେ । ଆର କୂଳ ଦୂରନ୍ତ । ଆଖି ପାଏନା ନଦୀ ଲଙ୍ଘି ଚାଲିଥାଏ, ସରୁ ନଥାଏ । ଏମିତି ଏକ ଅସରନ୍ତି ଯାତ୍ରାର ଏକମାତ୍ର ସାକ୍ଷୀ ସମୟ । ଅଥଚ ସେ ନୀରବ ସେ କିଛି କୁହେନା 'ସମୟ କୁହେନା କିଛି ।'

॥ ସମୟ କୁହେନା କିଛି ॥

ଏ କବିତା ସମୂହ ପାଠକଙ୍କର, ପ୍ରକୃତିର । ଏହାର ପ୍ରସୁତିର ପୀଡା ମୋତେ ଆତ୍ମମଗ୍ନ ଯନ୍ତ୍ରଣା ଦେଇଛି । ଏହାକୁ ପ୍ରକାଶ କରି ଅନେକ ପତ୍ରପତ୍ରିକାର ସଂପାଦକ ଅନୁଗୃହିତ କରିଛନ୍ତି । ଅନେକ ପାଠକ ପ୍ରଶଂସା କରିଛନ୍ତି । ଅନେକ ବଂଧୁ ପ୍ରେକ୍ଷା ନିର୍ମାଣରେ ସାହାଯ୍ୟ କରିଛନ୍ତି । ସମସ୍ତଙ୍କୁ ପ୍ରଣାମ କରୁଛି କୃତଜ୍ଞତା ଜଣାଉଛି ।

ଓଡିଆ ସାହିତ୍ୟର ବାଙ୍‌ମୟ ପୁରୁଷ ସତୀର୍ଥ ବନ୍ଧୁ ନକୁଳ ଚନ୍ଦ୍ର ସାହୁ ମୋ କବିତାର ଚିହ୍ନରା ଗ୍ରାହକ । ମୋର ସାରସ୍ୱତ ଜୀବନର ଉତ୍ସାହ ଦାତା । ଏ କାବ୍ୟ ପୁସ୍ତକର ସମସ୍ତ ଶ୍ରେୟ ତାଙ୍କର । ତାଙ୍କୁ ପ୍ରଣାମ କରୁଛି । କବିତାଗୁଡିକ ଟାଇପ୍ କରିବାରେ ଆଶୁ, ଶ୍ରୀକାନ୍ତ, ପ୍ରିୟମ୍ୱଦା, ମାନଗୋବିନ୍ଦ, ବାଦଲ ଓ ଗଣେଶ ସାହାଯ୍ୟ କରିଥିବାରୁ ସେମାନଙ୍କୁ ସାଧୁବାଦ ଜଣାଉଛି । ରବିନାରାୟଣ ଷଡ଼ଙ୍ଗୀ ଟାଇପ୍ ସେଟିଂ ଓ ପୁସ୍ତକ ଆଙ୍ଗିକ ସାଜସଜ୍ଜା ରୁଚିପୂର୍ଣ୍ଣ କରିଥିବାରୁ ତାଙ୍କୁ ଧନ୍ୟବାଦ ଜଣାଉଛି । ଚିତ୍ରଶିଳ୍ପୀ ବିଜୟ ପ୍ରଧାନ ପୁସ୍ତକର ସୁଦୃଶ୍ୟ ପ୍ରଚ୍ଛଦ ଅଙ୍କନ କରିଥିବାରୁ ଧନ୍ୟବାଦ ଜଣାଉଛି । ସଂକଳନଟିର ସୁଦୃଶ୍ୟ ପ୍ରକାଶନରେ କବି ବଂଧୁ ଭିକାରୀ ଧଳଙ୍କ ନିଷ୍ଠା ଅଭିଭୂତ କରିଛି ତାଙ୍କୁ କୃତଜ୍ଞତା ଜଣାଉଛି ।

-ଫଣୀନ୍ଦ୍ର ଭୂଷଣ ନନ୍ଦ

# କବିତାକ୍ରମ

# ଆଶ୍ୱାସନାର ଆକାଶ

ବିପନ୍ନ ପ୍ରାଣୀଙ୍କ ତାଲିକାରେ ମୁଁ ଥିଲି
ତମେ ଚେଷ୍ଟାକଲ
ଉଦ୍ଧରିବା ପାଇଁ
ମୁଁ ନିଶ୍ଚିହ୍ନ ହୋଇଗଲି
ଆକାଶର କୁଆଁ ତାରା ।

ତମେ କହିଲ
ଯା' ଆକାଶ ହୋଇ ଯା,
ଜଙ୍ଗଲ ଭିତରେ ହରୀଣିଟିଏ ତରକା
ମେଘତଳେ ମୟୂରଟିଏ ଉତଳା
ଚଳଚ୍ଚିତ୍ରର ପର୍ଦ୍ଦାରେ ନାୟିକା ପରି
ସୁନ୍ଦର ଓ ରୋମାଣ୍ଟିକ
ଉତ୍ତରୀୟକୁ ପବନ କରି
ବିହ୍ୱଳ ଓ ବ୍ୟାକୁଳ ସ୍ୱରକୁ ଲମ୍ବାଇ
ମୁଁ ଖୋଜୁଥାଏ ତମକୁ
ତମେ ସମସ୍ତ ସମ୍ଭ୍ରମ ନେଇ ବ୍ୟସ୍ତ ଓ ସଲ୍ଲଜ
ବେପଥୁର ରେଣୁରେ ରେଣୁରେ ମଗ୍ନପ୍ରାଣ ।

ମୁଁ ଧ୍ୱଂସର ଦାଢରେ
ମୁହ୍ୟମାନ, ଅନନ୍ତ ଯନ୍ତ୍ରଣାରେ
ବିଗଳିତ ।

## ।। ସମୟ କୁହେନା କିଛି ।।

ତମେ ଜାରି ରଖିଛ ସଂଗ୍ରାମ
ଉଦ୍ଧାର ପାଇଁ
ମୁଁ ଧ୍ୱଂସ ପଥର ଯାତ୍ରୀ
ତମେ ଅମୃତ ଚାରା ବୁଣିଛ
ଅକୁମାରୀ ହିମାଚଳ
ମୁଁ ବିଷଜର୍ଜର ଯାତ୍ରୀ ।

ତମେ ଅମୃତ ମଧୁମୟ
ମୁଁ ହଳାହଳ ଶୂନ୍ୟମୟ
ତମେ ଛୁଇଁଲ ମଳୟ ପରି
ମୁଁ ଉଦ୍ଧରିଲି ଅହଲ୍ୟା
ତମେ ନିର୍ମାଣିଲ ସବୁଜ ବଳୟ
ମୁଁ ବ୍ୟାପିଗଲି ଆଦିଗନ୍ତ
ଖିଲିଖିଲି ବ୍ୟୋମମୟ ହସ
ମୁଁ ଶୂନ୍ୟତରୀ
ତମେ ଆଶ୍ୱାସନାର ଆକାଶ ।

ㅁㅁ

## ଅଜୀଗର୍ତ୍ତ : ସମୟ : କିଶୋରୀ

ଆମ୍ର ତୋରଣ ଦେଲାବେଳେ
କିଏ ଜଣେ କହିଲା;
କବାଟ ଅଛ ମେଲା କରି
ତକେଇଥା ସେ ଆସିବ
ଆସିବ ଆସିବ
ଫଗୁଣର ମହୁ ଧରି
ଖରାର ଝାଞ୍ଜିଧରି
ବିଜୁଳି ଚମକ ପରି ।

ଦୂରରୁ ଟ୍ରେନର ହ୍ୱିସିଲ ଶୁଭିଲା
ପ୍ରେମର ପ୍ରସ୍ରବଣ ପରି
ପଥର ତରଳିବା ଆରମ୍ଭ ହେଲା
ଛାତି ଭିତରୁ
ଅଜସ୍ର କାଉ, ପାରା ଓ କୁଂଭାଟୁଆ
ରାବି ଉଠିଲେ ଚୋଖି ରାଗରେ
ତୁହି ମା ଜନମ ଭୂମିର ଆରାଧନାରେ ।

ଗାଡି ଟ୍ରେନର ଶବ୍ଦ
କାଉ କୋଇଲିର କଳରବ
ବାଘର ହେଣ୍ଟାଳ
ଓ ବିଲୁଆର ହୁକେହୋ
ଚଳମାନ ଝରଣା ପରି

## ।। ସମୟ କୁହେନା କିଛି ।।

ପାହାଡର ଛାତି ଚିରିଲା
ମତୁଆଲା ଭଅଁର
ଗୁଣ୍‌ଗୁଣେଇଲା
ଏଥର ନୀରବ ଭାଷାରେ
ଅଜଣା ରାଗରେ ।

ବନ୍ଦ ଓଠର ଦରଜାରେ
ପାହାର
ବନ୍ଦ ଛାତିର ସିନ୍ଦୁକରେ
କୋଲପ
ଝିଅର ପ୍ରଥମ ଗାଧୁଆ ପରି
ସାତ ଦିନର ଅଜ୍ଞାତବାସ
ଅଭିମନ୍ୟୁ ବ୍ୟୁହ ଭେଦର
କୌଶଳ ଶିଖୁଥିଲା
ଗଜ ଉଦ୍ଧାର ପାଇଁ
ଚକ୍ର ପେଶା ସରିଥିଲା
ନକ୍ର ଉଦ୍ଦେଶ୍ୟରେ ।

ମୁହଁ ଚାହାଁଣୀ ତୀବ୍ର ହେଲା
ଶବ୍ଦ ଗୋଳମାଳ ହେଲା
ବିଷମୟ ସମୟ ହରିଣୀ ପରି
ବ୍ୟାଧର ଜାଲରେ
ସୁନ୍ଦର ଲୁହଟୋପାକ
ଚିତ୍ରମୟ ହେଲା ।

ଗଲା ସମୟର କାରୁକାର୍ଯ୍ୟରେ
ଶିହରି ଉଠିଲା ଦିଗ୍ ବିଦିଗ୍
ଥାଟ ପଟାଳି ଧରି ବଣ ପଶୁ ସବୁ
ଏକାଗ୍ର ଉଦାସୀନତାରେ
କିଶୋରୀର ସାରଙ୍ଗ ଗୋଡ

ପାଣି ଚାରିପଟେ ଚକ୍‌କର କାଟିଲା
କଳା ଶ୍ରୀମୁଖକୁ ଅନାଇବାକୁ
ରାଣ ଥିଲା ସର୍ବଜ୍ଞ ପଣ୍ଡିତଙ୍କର ।

ଅଥଚ ଯୌବନ ବିକୁଥିଲା
ସମୟ
ଭାରାକ୍ରାନ୍ତ ମଧ୍ୟାହ୍ନର ଛାଇତଳେ
ଆମ୍ର ତୋରଣ ସଜାହେଲାବେଳେ
କିଏ ଜଣେ ବାହୁନୁଥିଲା କପଟରେ
ଅଜୀଗର୍ତ୍ତ ? ସମୟ ? କିଶୋରୀ ??
□□

# ଜୀବନର ଅନ୍ଧଗଳି

କ୍ରମଶଃ ସମସ୍ତ ଗଛ ଅପସରିଗଲେ
ଆବହ ସଙ୍ଗୀତ ଚାଲିଥିଲା
ମଞ୍ଚରେ ଥିଲେ ଅତିଥି ;
ପବନର ପ୍ରତିଧ୍ୱନିରେ
ଝରାପତ୍ରର ମର୍ମର ଗାଉଥିଲା
ବିଦାୟ ସଂଗୀତ ।

ଜଙ୍ଗଲର ସଂଜ୍ଞା ବଦଳି ସାରିଥିଲା
ଅନିର୍ଦ୍ଦିଷ୍ଟ କାଳକୁ ଅପେକ୍ଷା କରିଥିଲା
ମୌନ ପ୍ରଜାପତିମାନେ ଫେରୁଥିଲେ
ସଂବାଳୁଆ ଖୋଳକୁ
ହିଂସ୍ର ତୋରଣ ସବୁ ଖସି ପଡୁଥିଲା
ସବୁଜ ବେହରଣ ତରଳି ମିଶୁଥିଲା
ମାଟିରେ ।

ନୀଡଫେରା ପକ୍ଷୀମାନେ ସମର୍ପଣ କରିଥିଲେ
ନିଜର ଆହାର
ପ୍ରସ୍ତୁତି ଚାଲିଥିଲା ଶୁନଃଶେପ ମାନଙ୍କ
ଅତ୍ମତ୍ୟାଗ ନାଟକର
ଅପରାହ୍ନର ଗୀତ ସବୁ ବିସ୍ମୃତ ହେଉଥିଲା
ସଞ୍ଜରେ

ଅନୁଶୋଚନାର କେନ୍ଦେରା ହଜାଇ ସାରିଥିଲା
ଗୋବିନ୍ଦଚନ୍ଦ୍ରମାନଙ୍କୁ
ଜାନୁଘଣ୍ଟ ପର୍ଶୁରାମର ବିକ୍ରମ
ମଧ୍ୟାହ୍ନର ଛାଇପରି ତରଳୁଥିଲା
ଓହ୍ଲାଉଥିଲା କୁମାରୀର ବସନ ପରି
ପରକୀୟାରେ ।

ଆଶ୍ୱାସନା ଦେବାକୁ ନଥିଲେ ପିତୃପୁରୁଷ
ସମବେଦନାର ସ୍ଥାପତ୍ୟସବୁ ହଜିସାରିଥିଲା
ଗଛ ନିଶ୍ଚୁପ ଥିଲା ଭ୍ରମାତ୍ମକ ନିର୍ଣ୍ଣୟ ପରି
କ୍ରମଶଃ ଅଭିନୀତ ହେଉଥିଲା
ନୂଆ ସ୍ମୃତିଲିପି, ନୂଆ ଶୋଚନା
ନୂଆ ସଙ୍ଗୀତ
ଗଛ ସବୁ ରହସ୍ୟାବୃତ କାହାଣୀ ପରି
ଉଜାଗର ରହିଥିଲେ
ଥିଲେ ଆଶ୍ୱସ୍ତ ।

▢▢

# କଥୋପକଥନ

ଗଛହିଁ ସବୁଦିନେ ମୋର
ହୃଦୟରେ ଥାଏ, କୋଳାଏ, ବୋକଦିଏ
ଚିହ୍ନେ କଥାହୁଏ ଦରୋଟି ଭାଷାରେ
ଅସ୍ପଷ୍ଟ କିନ୍ତୁ ପରାଣକୁ ଘାରିଦିଏ
ମୁଁ ଜାଣେନା ସେ କଣ କୁହେ
ସେ ଆକାଶକୁ ଆଶ୍ୱାସନା ଦିଏ
ମୁଁ ମାଟିକୁ ବୋକଦିଏ,
ନିଜର ଏକ ଭିନ୍ନ ପରିଚୟ ପାଇ ସାରିଥାଏ ।

ଗଛକୁ ସବୁ ଦୁଃଖ, ସବୁ ଯନ୍ତ୍ରଣା
ବଖାଣି ଦେବାକୁ ଇଚ୍ଛା, କହିବା ଆରମ୍ଭ କରିଛି
ଦେଖିଲା ବେଳକୁ ସେ ନାହିଁ
ଠିଆ ହେଇଛି କାର୍ଖାନା
କଳା ଧୂଆଁ ଲେପି ଦେଲାଣି ମୁହଁରେ ।

ଗଛବି ତା ଦୁଃଖକୁ ବଖାଣୁଥାଏ ଚିରଦିନ
ନିର୍ଜନରେ ଅଥଚ ମୁଁ ବୁଝିଲା ବେଳକୁ
ସେ ନଥାଏ ।

କଟା ଗଛର ଗଣ୍ଡିରୁ ଦୁଇ ପତ୍ର ଗଜୁରେ
ସବୁଜ ରଙ୍ଗ ଖେଳେଇ ପବନରେ
ମୂଳରେ ପଥରଟେ ଥୋଇଦେଇଛି ଯୋଗୀ

ସିନ୍ଦୁର ବୋଳା ଫୁଲମାଳା ପିନ୍ଧା
ଦେବୀପରି,
ଥୁଣ୍ଟା ଗଣ୍ଡିରୁ ମୁଣ୍ଡ ଟୁଙ୍ଗାଉଛି
ଏଣ୍ଟୁଅଟିଏ, ରଙ୍ଗ ବଦଳାଉଛି ଘଡିକୁ ଘଡି
ଦିଶୁଛି ମୋ ପରି, ଗଛପରି
ଅର୍ଥାତ ମୁଁ ଆଉ ମୁଁ ହୋଇ ରହିନି
କଟି ସାରିଛି ମୁଣ୍ଡ, ବେକରୁ ଝରୁଛି
ରକ୍ତର ଫୁଆରା, ଏଇ ଯୋଉ ସ୍ୱପ୍ନ ଦେଖା
ଆରମ୍ଭ ହୋଇଛି
ନଈପରି ବହି ଚାଲିଛି ଦୁଃଖକୁ ପ୍ଳାବିତ
କରି, ଗଛ ବଢୁଛି ।

ଗଛରେ ବସିଚି ପକ୍ଷୀ, ନଈ ପାରିହେବ
ନା ସୁଅ ଅଛି ନା ନଉକା
ସିନ୍ଦୁର ବୋଳା ପଥର ଆର୍ଶୀବାଦ
ଦେଉଛି, ମୁଁ ବସିଛି ଭକ୍ତଙ୍କ ଭିଡରେ
ନିର୍ଲିପ୍ତ ସରୀସୃପଟିଏ, ପକ୍ଷୀଟିଏ ।

ଗଛର ଆତ୍ମା କାନ୍ଦୁଛି କଇଁ କଇଁ
ସବୁକାଳର ସମୟପରି
ଅତୀତର ରାହାଧରି
ଗଛକୁ ଚିହ୍ନି ହେଉନି, ନଈ ପରି ଦିଶୁଛି
ଅଥଚ ଅବ୍ୟାହତ ରହିଛି କଥୋପକଥନ
ଗଛ ସହିତ ମୋର ।

□□

# ଜହ୍ନତଳେ ଜୀବନ

ମିଛ ମିଛ ଜହ୍ନ ସତ ସତ ଅରଣ୍ୟ
ବେଶ୍ ସ୍ୱପ୍ନ
ଆଖୁ କିଆରୀରେ ଜିଲିଙ୍ଗିର ପ୍ରେତ
ଚଲାବୁଲା କରେ
ବରଗଛ ଓହଳରେ ଦୋଳିଖେଳେ
କାଶତଣ୍ଡି ହସେ ହଲିହଲି
ଓଡିଶୀ ନାଚେ, କୁହେ
ଚିର୍ଗୁଣୀମାନେ କୁଆଡେ ଗଲେ
ପାହାନ୍ତା ପହରରେ ।

ସବୁ ଏମିତି ସାଧାରଣ, ଅରଣ୍ୟବି
କଇଁ ଫୁଟେନା, ଜହ୍ନ ଦିଶେନା, ଭାଲୁ ପଶେନା
ଆଖୁ କିଆରିରେ,
ଜିଲିଙ୍ଗି ବରଣମାଳା ଗଳେଇଦିଏ
ବନ୍ଧୁକଧାରୀ ଯୁବକ ବେକରେ
ଅପହଞ୍ଚ ସୁଖ ଅଜାଡି ପଡେ
କୁଡିଆ ଘରେ ।

ଉଡିଉଡି ଯାଏ ହଳଦୀବସନ୍ତ
ସାପଟିଏ ଚରିଯାଏ ଦେହସାରା
ଯଦି ସେତକ ହିଁ ପ୍ରାପ୍ୟ
ସେତକ ହିଁ ସୁଖ

## ।। ସମୟ କୁହେନା କିଛି ।।

ଜହ୍ନ ବିଶେ କୁଡିଆ ଆରପାଖେ
ଶାଳ ଗଛରୁ ଉହୁଁକି
ହାତରେ ପଡେ;
ଧଳା ପେଚା ଫଡା ଫଡାଏ ଦିନରେ
ସୂର୍ଯ୍ୟ ଗଢୁଥାଏ ଆଉ ଏକ ପୃଥିବୀ
ସବୁଜ ସୁନ୍ଦର ।

କାହିଁକି,
ଏତେ ପ୍ରେମରେ ଜିଲିଙ୍ଗି ଅରଣ୍ୟର
କାହିଁକି ଦେହଖେଳ ମୁହୂର୍ତ୍ତର
ସହରୀ ଯୁବକ କୁଡିଆରେ ବନ୍ଧୁକ ଡେରି
ଯାଏ ଯେ ଯାଏ
ସହର ଏଠୁ କେତେ ଦୂର ?
କେଉଁ ଦିଗ
ନଦୀର ସୁଅ ଭଳି ଜିଲିଙ୍ଗିର
କୁଆଁରୀ ମନ ବହି ସାରିଥାଏ
ହରିଣୀ ପରି କନକନ
ଏଣ୍ଡୁଅଟିଏ ମୁଣ୍ଡଟୁଙ୍ଗାରେ
ଖୁଦ ଖାଇ ଉଡିଯାଏ କୁଆ
ଚାଳ ଛପରକୁ;
ଓସ୍ତ ଗଛରେ କାଠହଣା
ଗଢୁଥାଏ ଆଉ ଏକ ପୃଥିବୀ ମଞ୍ଜକୁ କଣା କରି
ଜିଲିଙ୍ଗି ହଜାଇ ସାରିଥାଏ ଠିକଣା
ଖତ ଗଦାରେ ଗଜୁରୁଥାଏ ନୂଆ ପୃଥିବୀର
ବୀଜ, ନୂଆ ଆଲୋକର ସୂର୍ଯ୍ୟୋଦୟ ।

ଜିଲିଙ୍ଗି କାଠହଣା ନା
ମଞ୍ଜହରା ଗଛର ରୋଦନ
ମିଛ ମିଛ ଜହ୍ନ ତଳେ ଅରଣ୍ୟ
ଚେନାଏ ଜୀବନ ।

❑❑

# ଜିଲିଙ୍ଗି

ବନ୍ଧୁ !
ଲାଜକୁଳା ଜଙ୍ଗଲି କଏରୁକୁ
ତୁ ଶିଖାଇଥିଲୁ ପଶୁ ଶୀକାର
କେମିତି ଲକ୍ଷ୍ୟ କରାଯାଏ
କେମିତି ଟିପାଯାଏ ଟ୍ରିଗାର ;
ସେ ଏବେ ପୋଖତ ଶିକାରୀ
ଜଙ୍ଗଲରେ ବୁଲେନା
ସହର ଭିତରେ ମଞ୍ଚା କରି ଜଗେ
ନୂଆଁ ନୂଆଁ କିଶୋରୀ ଉପରେ
ଟ୍ରିଗାର ଚାପେ ।

ବନ୍ଧୁ !
ତୁ ତ ସହରୀ ଲୋକ
ଶିକ୍ଷିତ, ଉପଭୋଗ ତୋର ନିଶା
କିନ୍ତୁ କଏରୁ ମାଟିର ମଣିଷ
ସେ କଣ ହଜମ କରି ପାରିବ ତୋର
ମନ୍ତ୍ର ?

ବନ୍ଧୁ !
ତୁ ତୋ ପାଠପଢା ଫେରେଇନେ
ମୋ କଏରୁକୁ ଫେରେଇ ଦେ
ସେ ଜଙ୍ଗଲରେ ଖେଦିବୁଲୁ

ଆକାଶକୁ ସଂଚରି ଯାଉ
ହାଣ୍ଡି ଭିତର ହାଣ୍ଡିଆର ସ୍ୱପ୍ନ ଦେଖୁ ।

ବନ୍ଧୁ !
ତୋ ପାଠ କଣ
ଶିଖାଇ ପାରିବ ଜୀବନର ଆଦିମତା
ହରିଣୀର ଛନଛନ ଚାହାଁଣୀ
ଜଙ୍ଗଲର ନିରାଲମ୍ବ କାହାଣୀ
ଦ୍ରୌପଦୀ ରାଜରାଣୀ ବନ୍ଧୁ
ସେ ସଭାରେ ଉଲଗ୍ନ ହୋଇପାରେ
କା'ର ଛାତି ରକ୍ତ ପିଇପାରେ
ମୁଁ ନିରୀହା ଆଦିବାସୀ ରମଣୀ
ମହତ ଜଗିଲେ ମିଳେ
ମୁଁ ରାତିକୁ ବାଣ୍ଟି ପାରେନା
କା' ସହିତ ।

ବନ୍ଧୁ !
ମୋ କଏରୁକୁ ଫେରେଇଦେ
ମୋ ଜଙ୍ଗଲ ମୋ ଆକାଶ
ମୋ ମାଟିକୁ ଚୁମିବାକୁ ତାକତ୍ ଦେ' ।
□□

# କବିତାର ଅର୍ଥ କଣ ?

ଅର୍ଥନୀତି ସାର କହୁଥିଲେ
ତମ କବିତାର ଅର୍ଥ କଣ
ମୁଁ ବୁଝିପାରୁନି

କବି ହଡବଡେଇଗଲା
ପ୍ରଶ୍ନ କରିଥିଲା ଅର୍ଥନୀତି ସାରଙ୍କୁ
ତମ ଅର୍ଥନୀତିର କୋଉ ତଥ୍ୟ
ବୁଝା ପଡେକି ?
ତମେହିଁ ମୋତେ ଏହି ଜଞ୍ଜାଳକୁ ବାଟ ଦେଖାଇଥିଲ ।

ମୁଁ ବି ବାୟା ପରି ମାଡି ଆସିଲି
ଆହା ଥରେ ଭାବିଲିନି
ଏତେ ଦହଗଞ୍ଜ ହେବାକୁ ହୁଏ
ଜୀବନ ସାରା ।

ଚାଲୁଚାଲୁ କେତେ ଲୋକ ଆସିଥିଲେ
ତାଳଦେଲେ କଦମ ମିଶାଇଲେ
କାନ୍ଧକୁ କାନ୍ଧ ମିଶାଇ ଟାଣି ଚାଲିଲୁ
କବିତାର ରଥ ବଡଦାଣ୍ଡରେ
ତ ମୁଁ ଚାଲିଛି ଦୁଇଟି ଅଟ୍ଟାଳିକାର
ଚୂଡାରେ ବନ୍ଧା ତାର ଉପରେ

## ।। ସମୟ କୁହେନା କିଛି ।।

ତଳେ ଜନସମୁଦ୍ର
ଗାଡିମଟର ପେଁ ପାଁ
ମୋତେ କିଛି ଶୁଭୁନି
ବିପଦଜ୍ଜନକ ଖେଳର ଏକାକୀ
ଖେଳାଳୀ
ଦଳେ ଦୂରରୁ ବାହାବା ଦେଲେ
ମୁଁ କିନ୍ତୁ ଦେଖୁଥାଏ ତଳକୁ
କେତେ ଉପରେ ମୁଁ
ପାଦ ଖସିଲେ
ସବୁଶେଷ ।

ଏଇୟା ବୋଧେ ଦୁଃଖ
ଯା' କିଛି ଭୟ ତାକୁ ଉଡେଇ ଦେଲି
ପକ୍ଷୀ କରି ନୀଳ ଆକାଶକୁ
ଯା' କିଛି ପୋଷାକ ଫିଙ୍ଗିଲି ମାଟିକୁ
ମୁଁ ଏବେ ପବନ ସହ କଥା ହେଉଛି
ମେଘ ପରି ଭାସି ଚାଲିଛି ଆମ ସ୍ୱପ୍ନ
ମିଛ ନଈ ପହଁରା ପରି ମୁଁ
ପବନ ପହଁରୁଛି ।

ପାଟିରୁ ବାହାରି ପଡୁଛି ଗୋଟିଏ ଗୋଟିଏ ଶବ୍ଦ
ଭୟର, ସେହି ସବୁ ଯୋଡି ହେଉଛି
ଆପେ ଆପେ, ତାଙ୍କ ହାତ ଧରାଧରି
କୋଳାକୋଳି କେତେ ଅର୍ଥପୂର୍ଣ୍ଣ
ମୁଁ ଭୁଲିଯାଉଛି ତ୍ରିଶଙ୍କୁ ଅବସ୍ଥା
ଅର୍ଥ କରି ପାରୁନି ଶବ୍ଦର
ଅନୁଭବୁଛି ମୋର ଅଫେରା ସ୍ୱପ୍ନ
ଦୁଃଖ ଓ ଆହ୍ଲାଦର ଅତୀତ
ବାସ୍, କବିତାର ଅର୍ଥ କଣ ?

❑❑

# ଖେଳ

ପାଣି ଯାଉ ସମୁଦ୍ରକୁ
ମାଟିଯାଉ ପୃଥିବୀକୁ
ଶୂନ୍ୟତା ଯାଉ ଆକାଶକୁ
ହଜିଯାଉଥିବା ଶୈଶବର ଉଚ୍ଚାରଣ
ଖେଳରେ ଖେଳରେ ଫେରିଆସୁ
କବିତାକୁ ।

ପବନର ରାସ୍ତା ଖୋଲିଦିଅ
ପକ୍ଷୀର ଉଡାଣ ପାଇଁ
ଝର୍ଣ୍ଣାର କୁଳୁକୁଳୁ ଧ୍ୱନିକୁ ଛାଡିଦିଅ
ପୃଥିବୀର ସଂଗୀତ ପାଇଁ
ମିଛ ପ୍ରକୃତି, ମିଛ ଜହ୍ନରାତି
ସତ ଜୀବନ ସତ ସୁରତି
ଖେଳରେ ଖେଳରେ ସାଇତା ହୁଏ
ଶେଯ ସୁପାତି ।

ଜୀବନ ହଜିଗଲେ
ସ୍ୱପ୍ନ ଆସେ
ଶବ୍ଦ ଅପହଞ୍ଚ ହେଲେ
କବିତା ଧରା ଦିଏନା
ସ୍ୱପ୍ନରେ
କବିତାରେ

ଲୁଚକାଳି ଖେଳ ଜୀବନ ସାରା
ସାକ୍ଷୀ ଆକାଶ
ସାକ୍ଷୀ ସମୁଦ୍ର ।

ଖେଳ ଭିତରେ
ମାଟି ଯାଏ ପୃଥିବୀକୁ
ଶୂନ୍ୟତା ଆକାଶକୁ
ପାଣି ସମୁଦ୍ରକୁ
ଶବ୍ଦ ସବୁ କବିତାରୁ
ସ୍ୱପ୍ନକୁ ।

□□

# ବର୍ଷା ବର୍ଷା ପ୍ରେମ

ଶିଶୁର ଗୀତ ପରି
ଏ ବର୍ଷ ବର୍ଷା
ଚିର ଅବୁଝା
ଜଙ୍ଗଲ ପଥ ପରି ସଂପର୍କ
ନିରୁଦ୍ଦିଷ୍ଟ ଚିରଦିନ ।

ଲଂପଟଙ୍କ ଘେର ଭିତରେ
କିଶୋରୀଟିର ନିର୍ଲ୍ଲଜ ପ୍ରେମ
ଅସ୍ପଷ୍ଟ ଦିଗନ୍ତ ପରି
ତୁ ବେଳେ ବେଳେ ମନେ ପଡୁ
ଯେମିତି ଈଶ୍ୱର ।

ଅହେତୁକ ସ୍ନେହରେ ବତୁରା
ମୋର ସ୍ୱପ୍ନ ସବୁ ନିର୍ବିକାର
ଯେମିତି ବର୍ଷା
ହରଦମ;

ପ୍ରେମ ଓ ପ୍ରତ୍ୟୟ କୁଣ୍ଡଳିନୀ ପରି
ଉର୍ଦ୍ଧ୍ୱଗ, ଆକାଶ ସାରା ବିଂଚି ପଡେ
ଜିଦ୍‌ଖୋର ସ୍ୱପ୍ନ
କଟୁଆଳ ପୁଅ ପିତୁଳା ତିଆରେ

ରାଜାପୁଅ ଜୀବନ୍ୟାସ ଦିଏ
ସେଇ କାହାଣୀର ପୁନରାବୃତ୍ତି
ସମୟ ସହ ବଦଳୁଥାଏ
ଦୃଶ୍ୟପରି ବର୍ଷାର ଗହନ ।

ପୂର୍ଣ୍ଣକୁମ୍ଭ ପରି ମୁହୂର୍ତ୍ତ ସବୁ ଭରା
ଗାଈ ଗୋଠର ଧୂଳି
ଗଛର ଝରାପତ୍ର
ଦିଗନ୍ତ ସହ ନଈ ପହଁରାକୁ ତିଆର
ଡାଳ ହଲିଲା ମାନେ ପକ୍ଷୀ
ଫେରାର୍ ।

ଶିଶୁର ଗୀତପରି
ନୂଆ ସୁର ନୂଆ ବ୍ୟାକରଣ
ଜୀବନକୁ ବିମୋହିତ କରେ
ଅସରା ଅସରା ବର୍ଷା
ମାଟିର ବୁକୁରେ
ଲଂଫ ମାରେ
ତୁହା ତୁହା ଶବ୍ଦର ତରଙ୍ଗ ।

ଆକାଶ ସାରା ଉଡେ
ପକ୍ଷୀ
ମନସାରା ପୁରିଯାଏ
ପ୍ରେମର ଅକ୍ଷର
ଶିଶୁର ଦରୋଟିରେ
ସ୍ୱରବର୍ଣ୍ଣ ଉକୁଟି ଉଠେ
ହଜେ ବ୍ୟଞ୍ଜନ
ଅବୁଝା ଗୀତର ସ୍ୱର
ଫେରେ ପୁଣିଥରେ
ମୋ ପାଖକୁ ।

ବର୍ଷା ବର୍ଷା ଜଣାପଡେ ପ୍ରେମ
ଯାହା ମନେ ପଡେ
ତାହା ଅସ୍ପଷ୍ଟ
ଯାହା ସାଉଁଟି ହୁଏ
ତାହା ପ୍ରେମ
ସବୁ କିଛି ଉଜାଡି
ସଜାଡି ଦିଏ ଜବରଦସ୍ତ
ସେହିଁ ଈଶ୍ୱର ।

ବର୍ଷା ପରି ଘନଘୋର
ଆକାଶ ପରି ନିବିଡ
ସୁନ୍ଦର ।
□□

# ପଥ କାହିଁ

ପଥ କାହିଁ ? କାହିଁ ପଥ ?
ଖୋଜୁଛି ପଥିକ
ଅରଣ୍ୟ ସମୁଦ୍ର ଆକାଶ ଦିଗନ୍ତ
ପଥ କାହିଁ ?

ଭୂମିରେ ପଡିଛି ଡଗର
ଅରଣ୍ୟରେ ପାଦଚିହ୍ନ ହିଂସ୍ରଜନ୍ତୁଙ୍କର
ଆକାଶରେ ବ୍ୟୋମପଥ ମୃତ ଜ୍ୟୋତିଷ୍କର
ଦିଗନ୍ତରେ ଦିଗଙ୍ଗନାଙ୍କ ନୂପୁର ନିକ୍ୱଣ
ସମୁଦ୍ରରେ ଡଙ୍ଗାଟିଏ ଆଗକୁ ଯାଉଛି
ବତୀଖୁଣ୍ଟ ଆଡେ
ଅଦୃଶ୍ୟ ନାବିକଟିଏ ସନ୍ତର୍ପଣେ ଯାଉଛି ବାହି
ପଥ କାହିଁ ?

ପଥ କାହିଁ ?
ଚନ୍ଦ୍ରିକା ଦେବୀ ଅଶ୍ୱ ଝପଟାଇ
ଖୋଜୁଛନ୍ତି ବୌଦ୍ଧୀୟ ସ୍ମାରକୀ
ଅସ୍ତସୂର୍ଯ୍ୟ ପକ୍ଷୀଙ୍କ ବାହୁଡା
ଗୁଣୁଗୁଣୁ କବିତାର ଅପୂର୍ବ ବିବୃତି
ଚନ୍ଦନର ଟୋପା ପରି ରାଣୀଙ୍କ ସ୍ୱେଦବିନ୍ଦୁ
ହୁଗୁଳା ହୁଏ କଟୀର ମେଖଳା

|| ସମୟ କୁହେନା କିଛି ||

ଛନ୍ଦକର ଅଶ୍ୱ ବଲ୍‌ଗା ପ୍ରତ୍ୟାବର୍ତ୍ତନରେ
ଗଙ୍ଗବଂଶୀ ରାଜାଙ୍କର ଉତ୍ତରାଧିକାର
ଅରଣ୍ୟ ଅରଣ୍ୟ ଭେଦି
କ୍ଲାନ୍ତିପଥ, କ୍ରାନ୍ତିପଥ
ଟକ୍‌ଟକ୍ ରକ୍ତ ଫୁଟେ
ଚାହାଁଣୀରେ ରାଷ୍ଟ୍ରହିଂସ୍ରା
ଗଙ୍ଗବଂଶୀ ରାଣୀଙ୍କର ଅହିଂସ୍ର ଭୂମିକା
ନିସ୍ତବ୍ଧ ଚନ୍ଦ୍ରିକା ।

ସେନା ସବୁ ବ୍ୟସ୍ତ ଓ ଚଞ୍ଚଳ
ସେନାପତି ବିହ୍ୱଳ କଣ୍ଠରେ
ସାମ୍ନାରେ କଳାପିଠିଆ ଦଳଙ୍କୁ
ସଂବୋଧନ କରେ ପଥ କାହିଁ ?
ପଥ କାହିଁ ?

ତୀର ଓ ତୂଣୀର ଛାଡି
ତୋଷାଳି ବା ମଗଧକୁ ଛାଡି
ପାଟଳୀପୁତ୍ର ଅଭିମୁଖେ
ଶବ୍‌ଦର ଘୋଷଯାତ୍ରା ପରି
ଗେରୁଆ ବେହରଣ ଭିତରେ ପ୍ରଣବର ଧ୍ୱନି
ଦୟାନଦୀ ଦିଗ୍ ନିର୍ଦ୍ଦେଶିକା ପରି
ଦେଖାଏ କୋମଳ ଏକ ପ୍ରାଣ
ଛଳଛଳ ଦେଶ ବିଭାଜନର ନକ୍ସା
କେବଳ ଚଇତାଳି ପବନର
ସୂକ୍ଷ୍ମ ଏକ ପୁଲକ ରକ୍ତବାହୀ ନାଡୀ ।

ମାଟିର ବିହ୍ୱଳ ସ୍ୱପ୍ନ ଗୁଣୁଗୁଣୁ ଧ୍ୱନି
ବାନ୍ଧୁଥାଏ ନୂଆ ଏକ ସ୍ୱର
ତନ୍ତ୍ର ଆଉ ମନ୍ତ୍ର ଭିତରେ ପ୍ରାଣ ଯେମିତି ସହଜ ସୁନ୍ଦରୀ...
ପଥ କାହିଁ ?  ପଥ କାହିଁ ?
ତଲ୍ଲୀନ ବାଟୋଇ ।
□□

## ସବୁ ଭଣିତା ତାରି

ଗଛଟିଏ
ରାଜକୁମାର ପରି
ସେ  ଜାଣିଥାଏ
ଯେତେ ପକ୍ଷୀ ଯେତେ ଆକାଶ
ସବୁ ତା'ରି ।

ଅସମାହିତ ସେ
ଦୁର୍ଦ୍ଧର୍ଷ ସେ
ଗପ ପରି କବିତା ପରି
ଗଛଟିଏ ।

ଅନ୍ଧାରୁଆ ପରି
ଛାପି ଛାପିକା ଅଂଧାରରେ ଚାଲେ
ଶବ୍ଦ ଭଣତି କଲାବେଳେ
ଆଙ୍ଗୁଠି କାଟେ
ଭଞ୍ଜ ପରି ଦୀନକୃଷ୍ଣ ପରି
ସେଲି ବା ଟାଗୋର ପରି ନୁହଁ
ଶତାବ୍ଦୀ ତଳର ବୁଢା
ବରଗଛ ।

ଗୋଲାପ ବା କଦମ୍ବ
ହିନା ବା ରଜନୀଗନ୍ଧା ନୁହେଁ

॥ ସମୟ କୁହେନା କିଛି ॥

ଲିମ୍ବ ଗଛରେ ଫୁଲ ଫୁଟେ
ମୂଲିଆ ପରି ଲିମ୍ବ ଫୁଲକୁ ସାଉଁଟେ
ମାଟିତଳୁ ଉଖାରେ ମାଟିର ରସକୁ
ପ୍ରତ୍ନ ମୂର୍ତ୍ତି ନୁହେଁ
ମୂଲିଆର ଝାଳକୁ ସାଉଁଳେ ।

କୋଣାର୍କ ଦେଖୁଛ ସୁଧୀବୃନ୍ଦ
ପୁଣିଥରେ ଦେଖ ତା ଆଖିରେ
ତାଜମହଲକୁ ଦେଖିଛ ସୁଧୀବୃନ୍ଦ
ପୁଣି ଥରେ ଦେଖ ତା ଅନ୍ତରରେ
ପୁଞ୍ଜିଭୂତ ମୂଲିଆର ଲୁହ
ଦାରୁ ପରି ନିସ୍ପନ୍ଦ ସେ
ସହସ୍ର ନୟନ
ଦିବ୍ୟଦ୍ରଷ୍ଟା ଦେଖୁଥାଏ
ଅସଜଡା ଜୀବନର କୋହ ।

ଗାଁ ସିନା ଛୋଟ ତାର
ଲମ୍ବିଥାଏ ଅନ୍ତରୁ ଅନ୍ତର
ଷଠୀଘରୁ ଚିତା ନିଆଁ ଯାଏ
ରକ୍ତ ନଈ ବହୁଥାଏ ଶିରା ପ୍ରଶିରାରେ
ଚିତାକୁ କବିତା କରି ବଖାଣିବା କଥା
ଏ ଦେଶ ତିମିର ତଳେ ଅଲିଭା ସେ ମୁକତି ସଳିତା
ଚିର ଆୟୁଷ୍ମାନ
କବିତାର ରେଣୁ ରେଣୁ ଭରିଯାଏ ତାହାରି ବନ୍ଦନ ।

ଚାଲୁ ଚାଲୁ କବିତାର ଲମ୍ବା ରାଜରାସ୍ତା
କେତେ ଲୋକ ଆସିଥିଲେ
ତାଳ ଦେଲେ କଦମ ମିଶାଇଲେ
କାନ୍ଧକୁ କାନ୍ଧ ମିଶାଇ ଟାଣିଲେ
କବିତାର ରଥ ବଡଦାଣ୍ଡରେ

ଏସିଆର ସ୍ୱପ୍ନରେ, ଭାନୁମତିର ଦେଶରେ
ସେ କିନ୍ତୁ ଚାଲୁଥିଲା ଉର୍ଦ୍ଧ୍ୱରେ
ମାଟିରେ ପାଦ ତ ଆକାଶରେ ମଥା
ଯେମିତି ଦଧିନଉତି
ଫରଫର୍ ଉଡୁଥିଲା କବିତା
ନୀଳବର୍ଣ୍ଣର ଚିରାଳ ଚିରକାଳ ।

ଗଛଟିଏ ସିଏ ଉତ୍ତୁଙ୍ଗ
ହିମାଳୟ ପରି
ଜାଣିଥାଏ ସବୁ ଶବ୍ଦ ତାରି
ସବୁ ଭଣିତା ତା'ରି
ଆକାଶ ବି
ପକ୍ଷୀ ବି ।
□□

# ସମୟ କୁହେନା କିଛି

ସମୟ କୁହେନା ପୃଥିବୀର ବୟସ
ଗଛର ଇତିହାସ
ଚମ ଦଉଡିରେ ଘୋଷଡା ହେବା
କଳାପାହାଡୀ ନିର୍ଯ୍ୟାତନା
ବା
ନୀପ ମୂଳ ବଂଶୀ ସ୍ୱନ
ଅଝଟ ଯମୁନା ।

ନିର୍ଲିପ୍ତ ମୁହୂର୍ତ୍ତ ସବୁ
କାଶତଣ୍ଡୀ ପରି
ଫୁଟି ଝଡନ୍ତି କେନାଲ ଦାଢରେ
ପାଣି କୁହେନା ଫୁଲାଞ୍ଜଳିର ବ୍ୟଥା
ବାସ୍ତୁହରା ଲୋକଙ୍କର କଥା
ନଦୀବନ୍ଧ ଯେମିତି ବଖାଣେ
ଜୀବନର ଅସରା କବିତା ।

ଅସଂଯତ କିଶୋର କିଶୋରୀ
ପ୍ରକୃତିର ଉଷ୍ମ ଆଲିଙ୍ଗନରେ
ବାଉଁଶ ଫୁଲ ପରି ଭବିତବ୍ୟ
ମହାକାଳର ଆବାହନରେ
ନଈ ସେପାରି ହାଟରୁ ସଉଦା ସାରି

## ।। ସମୟ କୁହେନା କିଛି ।।

ଆସୁଥିବା ଏକାକୀ ପଥିକ
ଗାଇ ସାରିଥାଏ ସବୁକିଛି ଗୀତ
ସମୟର ବାବଦୂକ ।

ଥଳୀ ଭର୍ତ୍ତି ଦୁଃଖର ଗଜଲ
ପକ୍ଷୀ ଭର୍ତ୍ତି ସାରାଟା ଗଛ
ଶାଳ ଅଗରେ ଚିର୍ଗୁଣୀମାନେ
ଛୁଆ କନ୍ଦାଇଲେ
ବାଉଁଶ ବଣର କପୋତ
କୁର୍ କୁରାଏ ସଂଗମରେ
ଗାଁ ଶ୍ମଶାନର ମଡାଚଣ୍ଡିଆ
ଲହଡି ଭାଙ୍ଗୁଭାଙ୍ଗୁ
ଅନର୍ଗଳ କହିଯାଏ ଦେହ ଓ ଦାହର କଥା
ଏକମାତ୍ର ଶ୍ରୋତା ମଦୁଆଟି
ମୁଣ୍ଡ ହଲାଏ
ସବୁ ବୁଝିଲା ପରି ହସେ
ଗୀତର ଭାଷାରେ ଗାଏ –
ଚମ ଦଉଡିରେ ଘୋଷଡା ହେବା
ସମୟର ଅଦୃଷ୍ଟ
ସେ କହି ପାରେନା ଯାଏ କେତେ
ଆସେ କେତେ
ଯମୁନାର ପାଣି
ବା ପୃଥିବୀର ବୟସ ।

ନଦୀର ତୀକ୍ଷ୍ଣ ସ୍ରୋତରେ
ସ୍ୱପ୍ନର ସୂକ୍ଷ୍ମ ଗୁଞ୍ଜରଣ
କାଶତଣ୍ଡୀ ବଣ ପରି
ସାମୟିକ
ସୁଖଦାୟକ ।
□□

# ସଂପର୍କ

ହଠାତ୍ ପକ୍ଷୀଟିଏ ରାବିଲା
ଖସିପଡିଲା ଝରା ପତ୍ରଟିଏ ସର୍ ର୍ ର୍
ପକ୍ଷୀ କହିଲା ଏ ମୋର ପ୍ରେମ କ୍ଷଣସ୍ଥାୟୀ
ଝରାପତ୍ର କହିଲା ଏଇତ ଜୀବନ !

ଗଛକୁ କଥା ଦେଇଥିଲି ଜୀବନସାରା ସାଥୀ ହେବି
ପତ୍ର ହଲାଇ ପବନକୁ ନିଜର କରିବି
ମୋ ଗୀତରେ ତୋତେ ବୋଧ ଦେଇ
ଗାଢ ନିଦରେ ଶୁଆଇ ଦେବି ।

ଝରାପତ୍ର କହିଲା ସବୁ ଏମିତି
ବାନ୍ଧି ହୁଏନି ଜୀବନସାରା
ଛିଣ୍ଡି ଛିଣ୍ଡି ଯାଏ ସଂପର୍କ ସମୟ ସହ
ପରିଚିତ ଠିକଣା ସବୁ ଅପରିଚିତ ଲାଗେ
ନିର୍ଜନତା ଭରିଯାଏ କୋଳାହଳରେ
ଅକୁହା କଥା ସବୁ କହି ହୁଏନା ଶବ୍ଦ ଗହଳିରେ ।

ହଠାତ୍ ପକ୍ଷୀଟିଏ ରାବେ ।
ଝରା ପତ୍ର ଝରି ଝରି ଯାଏ ।
ସର୍ ର୍ ର୍ ସର୍ ର୍ ର୍ ।।
□□

# ସତ ମିଛ

ନାରୀର ଗର୍ଭପରି ନିରାପଦ ସ୍ଥାନ
ପାହାଡ ଶୀର୍ଷରେ ଶୀର ଶିରେଇ ଗଲା ପବନ
ଲାବଣ୍ୟବତୀର ପ୍ରେମ ପରି ସମୟ
ଭାରି ଫାଜିଲ୍ ଭାରି ଆଶ୍ଚର୍ଯ୍ୟମୟ ।
ଯେମିତି ପଦ୍ମରେ ବନ୍ଦୀ ଭ୍ରମର ।

ବାସ୍ ବାସ୍ ସ୍ମୃତିକୁ ଖୋଲିଦେଲେ
ବୋହି ପଡେ ନଈ
ପାଣିରେ ପାଣିରେ ଉଚ୍ଚାଟ ହୁଏ
ଗଜଦନ୍ତ ପଲଙ୍କ
ବିସ୍ତାରିତ ଦିଗନ୍ତର କାନ୍ଧରେ
ଲୋଭ ମୋର ଅସୂୟା ମୋର
ପାଲଟେ ପ୍ରେମ
ଜଙ୍ଗଲ ବୁଦା ମୂଳେ
ଚଢେଇର ବସା ପରି ସ୍ଥିର
ଇଚ୍ଛା ମୋର ଅଭିମାନ ମୋର
ପିନ୍ଧିଥାଏ ଦିଗନ୍ତର ପାଟ ।

ଆ'ତୁ ହୃଦୟେଶ୍ୱରୀ ମାନମୟୀ ପ୍ରେମମୟୀ
ରାଧାମୋର ମୀରାମୋର
ମୋ ପ୍ରାଣର ଅପୂର୍ବ ସ୍ପନ୍ଦନ

ସ୍ମୃତି ମୋର କୀର୍ତ୍ତି ମୋର ପ୍ରାଞ୍ଜଳ ଝରାର ଧାରେ
ମଧୁର ରତ୍ନର ହାର ମନ୍ଦିର ଗାତ୍ରର ଚୂନ ପରି
ଉଲ୍ଲାସର ମରକତ ମାଳ ତୋ ଯୌବନ
ପ୍ରେମର ରସତରଙ୍ଗ ।

ନାରୀର ଗର୍ଭପରି
ପର୍ବତ କୋଟର ଜଙ୍ଗଲର କୋଳ
ମହାନଦୀ ସୀମା ଡେଇଁ
ତୁ ଅସିଛୁ ପ୍ରାଣର ମିତଣି
ପୃଥିବୀର ଅର୍ଗଳୀକୁ ଡେଇଁ
ଫିସାଦର ଧୂଆଁବାଣ ଡେଇଁ
ବିପର୍ଯ୍ୟସ୍ତ ଶରୀର ଭିତରୁ
ଉଙ୍କି ମାରେ ସ୍ତନର ତୁଙ୍ଗିମା
ସାତକୋଶ ଗଣ୍ଡପରି
କଳାଘୁମ ଜଟିଳ ଭଗ୍ନାଂଶ ।

ସୁବର୍ଣ୍ଣ ରାତିର ଜ୍ୟୋସ୍ନା
ଏକାକୀ ଦନ୍ତାହାତୀ ମଦମତ୍ତ
ଡେଇଁ ଯାଏ ଜଙ୍ଗଲର ସୀମା
ଦିଗ୍‌ବଳୟ ସେପାରକୁ
ଖେଦିଯାଏ ଆଙ୍କିଦେଇ
ହୃଦୟରେ ଲୋହିତ ଦ୍ରାଘିମା
ହାତୁଣୀର ନିଦ ଭାଙ୍ଗେ ଗର୍ଭବତୀ ହୁଏ
ମୟୂର ପୁଚ୍ଛର ରାତ୍ରୀ ସ୍ୱପ୍ନ ଭରିଦିଏ ।

ମତେ ସୁଖ ଲାଗେ ତୋ ବିଳାସ
ତୋ ରତି ତୋ ଦେହ ଦାନ
ଅଳସ ବ୍ରାହ୍ମଣୀ ସୁଅ ମିଠାମିଠା ବୌଦ୍ଧ ଗାନ
କାରୁଣିକ ସୂର୍ଯ୍ୟ ପରି
ଲେଉଟାଣି ତାନ୍ତ୍ରିକର ପ୍ରବ୍ରଜ୍ୟା ବିଧାନ
ପଦ୍ମ ପରି ମୁହଁ ତୋର ସ୍ମୃତି ତୋର

## ॥ ସମୟ କୁହେନା କିଛି ॥

କିଂବଦନ୍ତୀ ହୁଲସ୍ଥୁଲ ହୁଏ
ଅସ୍ତବ୍ୟସ୍ତ ଭଅଁରର ମନ
ଜଳିଯାଏ ଜଙ୍ଗଲ କ୍ଷେତବାଡି ନିଅଁଶିଆ ଫଗୁଣର
ଫୁଲଧାର, କାନି ଛାଡି ଚାଲିଯାଏ ଗାଁ କିଶୋରୀ
ଆବେଗର ଧାରେ ଧାରେ ପ୍ରେମିକର ଘରଦେଇ
ଉଠୁଥାଏ ଛନଛନ ଜହ୍ନ ।

ମୁଁ ଜାଣେ ପଦ୍ମ ମିଛ ଭଅଁର ବି ମିଛ
ମିଛ ସବୁ ପାହାଡ ତୁଙ୍ଗିମା
ଜ୍ୟୋସ୍ନା ଭିଜା ଗୋପପୁର
ରାଇ ଦାମୋଦର
ମିଛ ବି ପୁବେଇ ପବନ
ସିଦ୍ଧାଚାର୍ଯ୍ୟ ଅଗମ୍ୟା ଗମନ
ବ୍ରାହ୍ମଣୀର ସୁଅ,ମହାନଦୀ ଜଳ ସବୁ ମିଛ
ସତ ଯେତେ ପ୍ରେମାଳାପ ସ୍ମୃତିର ମୁହୂର୍ତ୍ତ
ସତ ସିନା ହୃଦୟର କୋହ
ସମୟର ଆକୁଳ ବିଳାପ ।

□□

# ସିକ୍ତ ବସୁନ୍ଧରା

ସମୟର ପର୍ଯ୍ୟଟନ ପାଇଁ
ଏବେ ଗୋଟିଏ ଶବ୍ଦ, ଗୋଟିଏ ଧ୍ୱନି
ଗୋଟିଏ ଇ କବିତା ।

ମେଘ ଆକାଶର ଛାତିରେ ଲେଖି ସାରିଥାଏ
ଶେଷ ଶବ୍ଦ
ପବନ ଗଛ ସଂଧିରେ ଉଚ୍ଚାରି ସାରିଥାଏ
ଶେଷ ଧ୍ୱନି
ମନ ଗହନରେ ଗଜୁରି ଆସୁଥାଏ ସ୍ୱପ୍ନର
ଶେଷ ସମ୍ମୋହନ;

ଏବେ ସୁଜଳା ସୁଫଳା ମାଟି
ଗଛମନସ୍କ ଋତୁ
ନିଦାଘ କେଳି କରୁଥାଏ ବର୍ଷା ସହିତ
ବସନ୍ତ ଆଉଁସିଦିଏ ପୃଥିବୀକୁ
ପ୍ରଥମ ବାରିପାତର ଉନ୍ମାଦନା ସହିତ;

ଆଷାଢର ପ୍ରଥମ ଦିବସ ଗଛର ଲକ୍ଷ୍ୟ
ଯକ୍ଷର ପ୍ରେମ ପରି ବାଲୁଚର ଆତ୍ମାସବୁ ମେଘର ଲକ୍ଷ୍ୟ
ସିକ୍ତ ବସୁନ୍ଧରା କବିତା ପରି ମନୋରମ ଓ ପ୍ରୀତିଝରା ।
□□

# ଶୂନ୍ୟ ବିନ୍ଦୁ

ଦେଖ,
ସଂସାର ହାତରେ ନୁହଁ
ଏବେ ନୁହଁ
ତୁମରି ଦୁଃଖରେ ମୋର
ନିର୍ଯ୍ୟାତନା
ତମେ ମୋର ନାଗଫାଶ
ପ୍ରେମରେ ଛନ୍ଦି କଲବଲ
କର ।

ଯଶ ଅପଯଶ
ନିନ୍ଦା ଅପନିନ୍ଦା
ବେଦନା ହାହାକାର
ତମେ ବାନ୍ଧିଦିଅ ଘୁଙ୍ଗୁର
ବିଚ୍ଛେଦ ପ୍ରତାରଣାର
କୁଆରିଆ ମୁହାଁଣରେ
ମୁଁ ସନ୍ତରଣ କରେ
ପ୍ରାଣାନ୍ତକ ସନ୍ତାନ ଶବରେ
ଭାସିଯାଏ ମୋର
ପରିଚୟ ।
□□

# ଟର୍କିର କବିତା

କବିତା ଲେଖିବା କଥା ପଡିଲେ
ମନେ ପଡେ ଟର୍କି
ରିଆମାଳର ପାଗଳ;
ସେ ପଚାରିଥିଲା ତମେ କବି
କବିତା ଲେଖ ?
ନଈ ବୁହାଅ, ପାହାଡ ଅଝଟ ହେଲେ
ଗୀତ ଗାଅ, ହସିଥିଲା ଆକାଶ ଫଟାଇ
ମୁଁ ନିରୁତ୍ତର ।

କବିତା ଲେଖିବି ଲେଖିବି ହୋଇ
ଋତୁ ପରେ ଋତୁ ଚାଲିଯାଏ
ଶବ୍‌ଦରେ ସବାର ଭାବ
ଖିଲ୍ ଖିଲେଇ ହସେ ।

ଟର୍କି ନିର୍ଲିପ୍ତ, ବୋଝ ବୁହେ
ଗୋଟେ କାନ୍ଥ ଭଙ୍ଗା
ଇନ୍ଦିରା ଆବାସରେ ରୁହେ
କବିତା କଥା ପଡିଲେ ବହେ ହସେ
ପାହାଡକୁ ଆଙ୍ଗୁଳି ଦେଖାଏ ।

ଟର୍କି କଣ କବିତାକୁ ଠାବ କରିଥିଲା
ପାହାଡ ଗୁମ୍ଫାରେ

ମୁଁ ଶିହରି ଉଠିଲି
ଟର୍କିକୁ ଧରି
ପର୍ବତାରୋହଣ କଲି
ଗୁମ୍ଫାରେ ପଡୁଥିଲା, ସରୁ ଧାରେ
ସୂର୍ଯ୍ୟକିରଣ ଫର୍ଚ୍ଚା
ଶିଳାରେ ଲେଖା ହୋଇଛି
ଜୀବନ କଥା ।

ଶିଳାଲିପି ଦେଖାଇଥିଲା
ଟର୍କି, କହିଥିଲା ଇଏ
ଯୁଗାନ୍ତରର କବିତା ।

ଇତିହାସ ପ୍ରଫେସର ଆସିଲେ
ପ୍ରତ୍ନତତ୍ତ୍ୱବିତ୍ ଆସିଲେ
ଶିଳାଲିପିର ପାଠୋଦ୍ଧାର ହେଲା
କିଏ କହିଲା ଦେବଲିପି
କିଏ କହିଲା ବ୍ରାହ୍ମୀ
କିଏ କହିଲା ବୌଦ୍ଧ ଯୁଗୀୟ
ସମସ୍ତେ ଘୋଷଣା କଲେ
ନିଜର ଶ୍ରେୟ ।

ପାଠୋଦ୍ଧାର ହେଲା
ବୁଦ୍ଧଙ୍କର ଶ୍ରେଷ୍ଠ ଶିଷ୍ୟ ପୀତପାଦ
ଏଠି ଅଗମ୍ୟା ରମଣ କରିଥିଲେ
କୁଣ୍ଡଳିନୀ ଚକ୍ରରେ ଶିହରିଥିଲା
ନୈରାତ୍ମା ଯୁଗାନ୍ତିର କବିତା ।

ପୀତପାଦ ଶ୍ରେଷ୍ଠ ଶ୍ରମଣ
ଯୋଗାଧିରୂଢ଼ ଯୋଗାଚାର୍ଯ୍ୟ
ସଂସାରରୁ ଉର୍ଦ୍ଧ୍ୱ ଅମୃତମୟ
ଶବରୀ ସହିତ ରମଣ

ମହାବିଦ୍ୟାର ଦର୍ପଣରେ
ଜୀବନର ମୁହଁ ।

ଶବରୀ ସେମିତି ମାଟି
ମାଟିରେ ପଡିଛି
ପୀତପାଦ ଆକାଶ
ଆକାଶ ପରି ପରିବ୍ୟାପ୍ତ ।

ଏହି ଶିଳାଲିପି
ସେଇ ଶବରୀର ବ୍ୟଥା
ମାଟିର କଥା
ଅଣସର କବିତା ।

କବିତା କହିଲେ ମନେପଡେ
ଟର୍କିର କଥା ।
ଦଦ

# ନିଜପଣ

ମାଟିରେ ପାଦ ଥାପି
ତୁ କାହିଁକି ବିଭୋର ଆକାଶର
ସ୍ୱପ୍ନରେ ?

ମୁଁ ଜାଣିଥିଲି ତୋର ଭାବନା
ତୁ ମୋତେ ହିଁ ଚାହିଁଥିଲୁ
ସମୁଦ୍ର ଚାହିଁଲା ପରି ଆକାଶକୁ !

ହେ ପ୍ରେମିକା ? ଟିକିଏ ହସି ଦେ
ଗାଢ଼ ଚୁମ୍ବନର ଶବ୍ଦରେ
କବିତାଟେ ଲେଖିଦେ
ନହେଲେ ଘୁଞ୍ଚି ଯା' ମାଟି ତଳକୁ
ମା' କୋଳକୁ
ମୁଁ ପ୍ରସ୍ତୁତ ତୋର ସବୁ ଅସାମର୍ଥ୍ୟକୁ
କୋଳେଇ ନେବାକୁ
ଅରଣ୍ୟର ଛାତି ଭିତରେ
କବର ଦେବାକୁ ।

ତୋର ନୀରବ ଛାତି ଭିତରେ
ସାଇତା ମୋର ସ୍ମୃତି
ତୋର ପ୍ରେମର ପ୍ରତ୍ୟୟରେ
କ'ଣ ମୋର ନିଃଶ୍ୱାସ ।

## ।। ସମୟ କୁହେନା କିଛି ।।

ଧନ ! ପ୍ରାଣର ମିତ ତୁ
ମୋ ସୁଠାମ ଉହାଁଣୀର
ଆଦ୍ୟ ମଧୁଧାର
ତୋର ବିରକ୍ତି ମୋର ଫୁଲମାଳ
ତୋର ବିରହ ମୋର ସଜସ୍ମୃତି
ତୋର କାନ୍ଦଣା ମୋ ହୃଦୟର ପିଲିସଜ ।

ହେ, ପ୍ରେମିକା ! ଶତଜନ୍ମର
ତୁ ଆସିଛୁ ଯଦି ବସନ୍ତ ଗାଉଛି
କୋଇଲି ସୁରରେ
ତୁ ନିକଟେଇ ଗଲେ ବଉଳେଇ ଯାଏ
ସହକାର ବନ
ତୋର ପାଦର ନୂପୁର ଧ୍ୱନି
ରକ୍ତରେ କଣ୍‌କେଣେଇ ଯାଏ
ପରମ ଆହ୍ଲାଦର ବିସ୍ତାର
ତୋର ଉହାଁଣୀର ଶୁଦ୍ଧ ହାଓ୍ୱାରେ
ଭାଙ୍ଗି ପଡେ ମୋର ବୃଥା ଅହମିକା ।

ଧନ !
ତୋର ଭାବନା
ତୋର ପାଷ୍ଚାତାପ
ତୋର ନିଜ ପଣରେ
ଗଜୁରି ଉଠୁଥାଏ ମୋ ପ୍ରେମର ଭ୍ରୁଣ
ତୋର ପ୍ରତିଟି ସ୍ମୃତି ସହିତ
ମୋର ହଜାରେ ଜୀବନ ହଜାରେ ମରଣ ।
□□

# ଆରମ୍ଭ ଗଛରୁ

ଜୀବନର ଅନ୍ତ
ଏମିତି ହୁଏ ନାହିଁ ଛାୟାଚିତ୍ରରେ....

ଆରମ୍ଭ ହୁଏ ଗଛରୁ
ଛୋଟଛୋଟ କାହାଣୀ
କିମ୍ବଦନ୍ତୀର ସରହଦ
ଅସୁରୁଣୀ ବୁଢ଼ୀ, ସାତ ତଳ ପଙ୍କ,
ଏପରିକି ମାଧବୀ କୁଞ୍ଜ
ଅଗନା ଅଗନି ବନସ୍ତ
ନିଜ ଗୋଡ ପୋତି ନିଆଁ ପୋଉଁ ଥାଏ
ଜୀବନ,
ରାସ୍ତା ଜଗିଥାଏ ନିଜର ଶୈଶବ ।
ଏମିତି କିଛି କିଛି ଆରମ୍ଭ ...

ଜବା କୁସୁମ ସଂକାଶ କାଶ୍ୟପେୟଂ ମହାଦ୍ୟୁତିର
ସକାଳ ଠାରୁ
ସର୍ବ କାର୍ଯ୍ୟେଷୁ ମାଧବ
ଖାଲି ସ୍ତୋତ୍ର, ସୀମାରେଖା ସମୟର, ଆରମ୍ଭର
ଚଂପାଗଛରୁ ଫୁଲ ଝଡୁଛି
ସ୍ମୃତିର
ଘରର ପ୍ରସ୍ତ ପ୍ରସ୍ତ ସିମେଣ୍ଟ ଇଟା ବାଲି ଖସୁଚି

|| ସମୟ କୁହେନା କିଛି ||

ପ୍ରତ୍ୟୟର
ରାଜକୁମାରୀଟିଏ ଛେଳି ଜଗିଛି
ଅର୍ଘାସୁର ପରି ଭେଣ୍ଡାଟିଏ ମେଣ୍ଢା ପାଳଟିଛି
ଖାଲି ପଲପଲ କୁମାରୀ ଭିତରେ
ଛାୟାଚିତ୍ର ଛାୟାଚିତ୍ର...

ଜୀବନ ଯାଉ ଚାଲୁ
ସମୟ ହିଁ ପଥ, ସମୟ ହିଁ ଯାନ
ସେ ହିଁ ଖୁସି ସେ ହିଁ ଦୁଃଖ
ସେ ହିଁ ରକ୍ଷା କବଚ ।

ଜୀବନ ଚାଲୁ ସମୟ ସାରା
ଆରମ୍ଭ ଯେଉଁଠି ଶେଷ ସେଇଠି
ଜୀବନ ଚାଲି ଚାଲି ଗଛ ଯାଏ ।

ଗଛ କିଛି କହି ପାରେନା ଖାଲି ଚାଲୁଥାଏ
କାଳେ ଚାଲିବା ସମାଧାନ କରିଦେବ ସବୁ ସମସ୍ୟା
ଶିଖାଇ ଦେବ କେମିତି ଟାଣ ମାଟିକୁ
ଫଟାଇ ଶୋଷି ହୁଏ ରସ ।
କେମିତି ନିଦାଘର ଖରାରେ
ଆଖିମିଟିକା ମାରେ ସବୁଜ ପତ୍ର
ଯାହା ଗଳୁରେ ତାକୁ ହିଁ ଡିଆରେ ଗଛ ।
ଛାୟା ଚିତ୍ର ।

ଗଛ ବୃଛ ଜୀବନ ମରଣ
ଗଛ ପଥିକ
ଲଗ୍ନହୀନ ଗମନ
ଆରମ୍ଭରେ ଶୁଭ୍ର ଉନ୍ମୋଚନ
ଯୁକ୍ତିସିଦ୍ଧ ପ୍ରଗଲ୍‌ଭ ରମଣ
ଆରମ୍ଭ ଗଛରୁ ଗଛରେ ହିଁ ଶେଷ ।
□□

# ଆବୋରିଛି ଆକାଶ

ଗଛକୁ ନିଜର ବୋଲି
କହି ହେଉନି, କେବେବି
ଆକାଶକୁ ଦେଖେଇ ହେଉନି
ଦୁଃଖ କେବେବି ।

ଗଛ ଉଜୁଡି ଗଲେ ଦୁଃଖ କାହାର
ଘିନୁଆର ନା ମାଗୁଣୀର
ଡେଣା ଫଡ ଫଡାଏ ଶାଗୁଣା
ଚାହାଁଣୀରେ ଦେଖାଏ
ଏକ ମଲା ପତଙ୍ଗ
ଏକଦା ଯେ ଉଡି ପାରୁଥିଲା ସାରା ଆକାଶ
ବଶୀଭୂତ କରୁଥିଲା ସାରା ଜଙ୍ଗଲ ।

ସୁଖର ପୁନରାବୃତ୍ତି କରିକରି ସେ
ଗାଉଥିଲା ଦୁଃଖର ଗଜଲ
ସୁଖର ଆରପଟେ ଦୁଃଖ ତ ନ ଥାଏ
ଗଛର ଅଗକୁ ଛୁଏଁନା ଆକାଶର ବଉଦ
ମେଘ ମାଖିଥିବା ପାହାଡ ଓଦା ହୁଏନା
ସଂବେଦନାରେ
ପ୍ରେମର ପ୍ରତିଟି ପଦ ମିଳାଇ
ଯିଏ ଗାଏ ଟୀକାଗୋବିନ୍ଦ ଚନ୍ଦ୍ର

ସେ ବି ଗାଉଥାଏ ସ୍ତୁତି ଚିନ୍ତାମଣି
ସାରାଟା ଖରାବେଳକୁ ଲହୁଲୁହାଣ କରି ।

ଆହା !
କହି ପାରିଥାନ୍ତି ହେଲେ ପଦୁଟିଏ
ବାପାଙ୍କ ଚିତାରେ ନିଆଁ ଦେଲାବେଳେ
କାହାକୁ କିଛି ବି ଦେଇନି
ମାନି, ସୁନି, ମୀନା ଓ ଲକି ମାନଙ୍କୁ
ନିର୍ଜନ ମୁହୂର୍ତ୍ତରେ କାନ୍ଦ କାନ୍ଦ ଭାବକୁ ଉଚ୍ଛାଟ କରି
ତାହି ମାଙ୍କୁଡି ଖେଳୁଥାଏ ସ୍ମୃତି
ଗଙ୍ଗଶିଉଳି ଗଛରୁ ବିଲାତିକୟାଁ ଗଛ ଯାଏ
ଲମ୍ବିଥାଏ ଶୈଶବର ଅମରାବତୀ ।

ଜ୍ୟେଷ୍ଠର ଖରାବେଳ ସାରା ଗଛରେ
ପ୍ରଜାପତି କଙ୍କି ଓ ଫୁଲଚୁଇଁ ଚଢେଇମାନଙ୍କୁ
ଘଉଡାଇ ଦିଏ ରଫ୍ ଖାତାରୁ କ୍ଷଣିକ ପାଇଁ
ସେମିତି ଅସମାଧିତ ହୋଇ ରହିଥାଏ
ଗଣିତର ଐକିକ ଧାରା
ତିନିଟି ନଳରେ ପାଣି ପୂରଉ ଥାଏତ
ଗୋଟିଏ ନଳରେ ଖାଲି କରୁଥାଏ ।
ମାଙ୍କଡ ତୈଳଦଣ୍ଡ ଉପରେ
ଉଠୁଥାଏ ତ ପୁଣି ଖସୁଥାଏ ।

ନା ମାଙ୍କଡ ଉଠିପାରେ ଶୀର୍ଷକୁ
ନା କୁଣ୍ଡ ପୂର୍ଣ୍ଣ ହୁଏ ପାଣିରେ
ସ୍ମୃତି ସେମିତି ଜଳୁଥାଏ
ଏକୁଟିଆ ଖରାବେଳେ
ଗଣିତ କଷୁ କଷୁ ହଜିଯାଏ
କିଶୋରୀ ପ୍ରେମିକା
ପ୍ରୌଢତ୍ୱ ଗ୍ରାସିଯାଏ ବୟସକୁ
ଅଲଗା ଅଲଗା ଶବ୍ଦରେ
ଲେଖାଯାଏ କବିତା ।

ମୁଁ ନିଜେ ହିଁ ଗଛ, ମୁଁ ହିଁ ଆକାଶ
ଶବ୍ଦର କଳାରେ ହଜିବା ମୋର ଭବିତବ୍ୟ
କବିତା ପଢାଠୁ କବିତା ଲେଖିବା
ହନୁମାନ ଚାଳିଶା ପଢି
ଜଙ୍ଗଲ ପାରିହେବା ମୋର ଉଦ୍ଦେଶ୍ୟ ।

ଏବେ ଗଛ ମୋର ନିଜର
ଆବୋରିଛି ନାଭି ପାଦରେ ଆକାଶ ।
□□

# ଅମୃତ ଅଭୀପ୍ସାର ସନ୍ଦର୍ଭ

ସୂର୍ଯ୍ୟାସ୍ତ ପରେ
ତମେ ଆସ ମୋ ଜୀବନରେ
ଯେମିତି ପକ୍ଷୀଟିଏ ଫେରେ  ନୀଡକୁ;
ଦିନସାରା କାମ କାମ କାମ
ଦହଗଞ୍ଜ, ଲୋକକଥା
ସମୟ ଯେମିତି ବାନ୍ଧି ହୋଇଛି
ତମ ପଣତରେ ନୀରବରେ,
ଦେଖ, କାମ ଭିତରେ ମଜ୍ଜି
ଯେମିତି ଭୁଲି ନଯାଅ ସବୁକିଛି
ଯେମିତି ନିଆଁ ଲାଗି ନଯାଏ
ସଂପର୍କରେ, ଶବ୍‌ଦରେ
ମୋର ସଞ୍ଚିତ ଅହଂକାରରେ
ଅନେକ ଦିନତଳେ
ତମକୁ କାମ ଭିତରୁ ଉଦ୍ଧାର କରିଥିଲି
ଦେଇଥିଲି କିଛି ସ୍ମୃତି ଓ ପ୍ରତିଶ୍ରୁତି ।

କିଛି ମୁହୂର୍ତ୍ତର ଆତ୍ମ ତୃପ୍ତି
କହିଥିଲି ଅମୃତ ଆଣିଦେବି
ଗାଇଥିଲି ପ୍ରେମର ସଙ୍ଗୀତ
ତମେ କର୍ମର ଦେବୀ

ଭୁଲି ନଥିଲ ମୋର ପ୍ରତିଶ୍ରୁତିରେ
ମୁହୂର୍ତ୍ତ ମୁହୂର୍ତ୍ତ ଗଣନା କରି
ପିଇ ଚାଲିଥିଲ ଜୀବନର ବିଷ
ସଂସାର ଜଞ୍ଜାଳରୁ ଉଦ୍ଧରି ଥିଲ
ଯାହାବା ଟିକେ ଅମୃତ
ସିଏ ବି ଉଭେଇ ଯାଉଥିଲା;

ମୁଁ ବିଷ ପିଇ ନୀଳ ହେବାକୁ ଚାହେଁ
ତମେ କାମ କରିଚାଲ
ମୁଁ ଦୁଃଖ ସାଉଁଟି ଅଭୀସ୍ପାର
ନେତ ବାଂଧିବାକୁ ଚାହେଁ
ତମେ ହସିଦିଅ;

ଜୀବନର ଦିଶୁନଥିବା ପୃଷ୍ଠା
ଖୋଲି ତମେ ପଢି ଯାଅ
ବିଷ ଚହଟି ଆସେ ତମ
ନୀଳ ନୟନରେ
ଅମୃତ ହିଁ ଅମୃତ ସଂଚରୁଥାଏ
ସଚରାଚରରେ ।
❑❑

# ଫେରିବା ବେଳ

ଯା' ଯା' ପକ୍ଷୀ ଜଙ୍ଗଲକୁ
ଯେ' ଯୁଆଡେ ଯାଆନ୍ତି
ତାହାହିଁ ପଥ
ପଥ ଫେରି ଆସେ ପୂର୍ବାଗ୍ରହକୁ
ତମେ
ସେମିତି ଆସିବ
ବସାକୁ ।

ତା' ପରେ
ଗଛ ଅଗରେ ନଥିବ ସୂର୍ଯ୍ୟାଲୋକ
ଦୋହଲୁଥିବ ଦୋଳିପରି
ସମୟର ଘେରରେ ଯାହା
ତାହା ମୁଁ ବି
ବସା ବି ।

ମୁଁ ଚାହିଁ ନଥିଲି ବଦଳି ଯାଉ
ଚିତ୍ରପଟ
ଆକାଶର ଭାଲପଟରୁ
ମୁଁ ଚାହିଁ ନଥିଲି ବସାକୁ
ଫେରିବାକୁ କେବେବି
କ୍ୟାଲେଣ୍ଡରର ତାରିଖ ପରି

## ।। ସମୟ କୁହେନା କିଛି ।।

ହୃଦୟରେ ଗାରଟିଏ ଥାଉ
ତମର ସ୍ମୃତି ପରି ।

ମୁଁ ଚାହିଁବା ନ ଚାହିଁବା
ତମେ ଯିବା ନ ଯିବା
ସବୁ କଥା ସମାନ ନୁହେଁ
ତମ ଭଙ୍ଗା ଚୂଡ଼ି ମୋ ଛାତିରେ
ଟାଣିଦିଏ ରକ୍ତାକ୍ତ ଗାରଟିଏ
ପ୍ରେମ ତ ଯାଏ ପ୍ରେମ ସହିତ
ଅନୁସରୁଥାଏ ତାର ଯନ୍ତ୍ରଣା
ସମୟତ ଯାଏ କୁହୁଡ଼ି ପଛରେ
ସରି ଅସୁଥାଏ ସବୁକିଛି କାନ୍ଦଣା
ଗୋଟିଏ ଗୋଟିଏ ଚୁପ୍‌ଥିବା ଶବ୍ଦ
ଖରାରେ ଚହଲୁଥାଏ ।

ଗୋଟିଏ ଗୋଟିଏ ଟଣ୍‌କୁଥିବା ଦୁଃଖ
ଫିଟି ପଡେ ରାଜକୁମାରୀର କାନ୍ଧ
ଯାହାର ଅର୍ଥ ଲେଖା ସରିଥାଏ
ଗେଣ୍ଡାଳିଆର ପରରେ
ଅତଏବ ଯା' ଯା' କହିଲେ
ଦୁଃଖି ହୁଏ ପକ୍ଷୀ
ଆ ଆ କହିଲେ
ନଇଁ ଆସେ ଆକାଶ
ଦେଖ୍ ଦେଖ୍ ତାମସା କହିଲେ
ମେଘ ଥମଥମ
ବିଜୁଳି ଭିତରେ ଦୁଃଖର ସରଗମ୍ ।

ମୁଁ ଏଠି ଚୁପ୍‌ଚାପ୍
ନୀରବ ଶବ୍‌ଦକୁ ହୃଦରେ ଭସାଏ
ସେଠି ଗୁମ୍‌ସୁମ୍

ଗଛର ନିଦ ପରି ଜଙ୍ଗଲକୁ
ବୋଧଦିଏ ।

ପଥ ସରିବା ସରିବା ହୋଇ
ପୁଣି ଆରମ୍ଭେ
ଗପ ଅସରା ପସରା ମେଲି
କତ ଲେଉଟାଏ
ଆକାଶ ଶୂନ୍ୟରେ ଗୀତ ଗାଏ
ଆମ ଫେରିବା ବେଳ ହେଲେ ।

ବାସ୍ ପକ୍ଷୀ ଉଡିଯାଏ ।
□□

# ହଁ ନା ଭିତରେ ପ୍ରେମ

ଏବେ ତୁମେ ନାହଁ
ମୁଁ ନାହିଁ
ଅଛି,
ସେଇ ଗଛ ତା'ର ଛାଇ
ଖେଳୁଛି ପୋଖରି ପାଣିରେ ।

ଏମିତି ଆମର ପ୍ରେମ
ସ୍ୱପ୍ନରୁ ଆରମ୍ଭ ସ୍ୱପ୍ନରେ ଶେଷ
ଗୁଣ୍ଡୁଚିମୂଷାଟିଏ ଖେପା ମାରୁଥାଏ
ଡାଳକୁ, ଅନଉଥାଏ ମାଟିକୁ ;
ପଚାରୁଥାଏ ପବନକୁ
ଫେରି ପାରିବୁକି ଘରକୁ ?

ଜଙ୍ଗଲସାରା ଶୀତଳ ଅନ୍ୟମନସ୍କତା
ଆକାଶସାରା ସ୍ମୃତିର ନକ୍ଷତ୍ର
ହଁ, ଯେଉଁମାନେ ସନ୍ଦେହରେ ଥିଲେ
ସେମାନେ ଜାଣି ସାରିଲେଣି ଆମ ପ୍ରେମ
ଆମ ଆସକ୍ତି, ଆମ ଏକାତ୍ମତା
ତାଙ୍କ ଗୁଜବର ଧୂଆଁ ତାଙ୍କୁ
ଆକ୍ତା ମାକ୍ତା କରୁଛି

॥ ସମୟ କୁହେନା କିଛି ॥

ଗୋଧୂଳି ପରି ଆମକୁ ଉସ୍‌କାଉଛି
ମିଳନ ପାଇଁ ।

ତୁମେ ଆସିବା ବାଟରେ
ତରଳି ଯାଉଛି ତାଙ୍କ ଘର ବନ୍ୟାରେ
ତୁମ ଚାହାଁଣୀରେ
ତାଙ୍କ ଛାତି କଲିଜା କ୍ଷତାକ୍ତ ହେଉଛି
ଅସଂପୂର୍ଣ୍ଣ କାହାଣୀ ପରି
ଆମ ଅଧାଗଢା ପ୍ରେମ ସେମିତି ରହିଛି
ଝୁରି ହେବାକୁ ବିଗତ ଦିନ
ଓ ଗୁଣ୍ଡୁଚିମୂଷାର ଚାହାଁଣୀକୁ ।

କାହାକୁ ଅଛପା ନାହିଁ
ଗଛର ଗଣ୍ଡିରେ ଲେଖା ତମ ନାଁ ଓ ମୋ ନାଁ ର
ଯୁକ୍ତଚିହ୍ନ
ପାନପତ୍ରରେ ଶରବିଦ୍ଧ ।

ବେଳେବେଳେ ସେଇ ଗଛର ଛାଇ
ପାଣିରେ ପହଁରୁଥାଏ
ଅଗଡାଳରେ ଗୁଣ୍ଡୁଚି ମୂଷାଟିଏ
ଆଖି ମିଟିକା ମାରେ
ତୁମ ହଁ ନାଁ ମଝିରେ ସମୟ
ଗଡିଯାଉଥାଏ ।
❑❑

# କବିତା ଲେଖା

କବିତା ଲେଖା କେତେ
କମ ସମୟ
କିନ୍ତୁ ପ୍ରସ୍ତୁତି ଜୀବନ ସାରା
ଯନ୍ତ୍ରଣା ଆକାଶ ସାରା ।

ଏ ପାହାଡରୁ ସେ ପାହାଡ
ମାଟିରୁ ଆକାଶ
ବେଳା ଭୂମିରୁ ସମୁଦ୍ର ଗର୍ଭ
ଡେଉଁ ଥିବା ଚେତନା
କେନ୍ଦ୍ରିତ ହୁଏ ଏକ ବିନ୍ଦୁରେ
ସବୁ ରସ
ସବୁ ବୀଜମନ୍ତ୍ର
ଧ୍ୱନି ତୋଳେ
ଫୁଲ ପରି ଫୁଟି ଉଠେ
କବିତା ।

କବିତା ଲେଖା
ଅଭ୍ୟାସ ନୁହେଁ
ତପସ୍ୟା
ସେ ହୁଏ ନାହିଁ
ହେବ ନାହିଁ
ଗଜୁରେ ନାହିଁ

ବରଂ ବ୍ୟାପ୍ତ ହୁଏ
ବିକଶିତ ହୁଏ
ମନରୁ ମନକୁ
ଧିରେ ଗମ୍ଭୀରେ
ହୃଦୟର ଶାଶ୍ୱତ ତାଡନାରେ ।

କବିତା ଲେଖା
ଖୁବ କମ ସମୟ
ପ୍ରସ୍ଫୁଟି ଜୀବନ ସାରା
ବ୍ୟାପ୍ତି
ଅନନ୍ତ କାଳ ।
□□

# କେହି ଜଣେ ତପସ୍ୟାରେ

ନକ୍ଷତ୍ର ମଣ୍ଡଳରୁ ଖସୁଥିଲା
ଏକ ସ୍ୱପ୍ନ
ଏକ ସଂଭାବନା
ଆଜୀବନ ପ୍ରାର୍ଥନାରେ କେହିଜଣେ
ସୃଷ୍ଟି ପାଇଁ
ଧୂଳି ସହିତ ଯୁଝୁଥିଲା
ବୋହି ସାରିଥିଲା ସବୁ ଆକ୍ରୋଶ
ପ୍ରକୃତିର ଧର୍ଷଣରେ
ରକ୍ତାକ୍ତ ଶରୀର
ଆଗରୁ ଏମିତି ହେଇନି
ବା ହେବ ପରେ ଜଣାନାହିଁ ।

ପ୍ରାର୍ଥନା ତରଙ୍ଗ ପରି
ବୃତ୍ତାକାରରେ ଖେଦିଯାଉଥିଲା
ପତ୍ର ପତ୍ର ଫୁଲ ଫୁଲ ରେଣୁ ରେଣୁ
ଗହ ଗହ ଆନନ୍ଦର ବନ୍ୟା ।

ଅଙ୍ଗୀକାର ଓ ଅସ୍ୱୀକାର ସବୁ
ଅନୁଭବ ଥିଲା ସମାନ
ପାପ ଓ ପୁଣ୍ୟ ସବୁ
ପ୍ରାରବ୍ଧ ଥିଲା ସମାନ

## ।। ସମୟ କୁହେନା କିଛି ।।

ଦୂରତ୍ୱର ବର୍ଣ୍ଣମାଳା
ଭ୍ରମପରି ବ୍ୟାପୁଥିଲା
ଓଜସ୍ୱିନୀ ନାରୀର ଅଞ୍ଚଳକୁ
ଅଥର୍ବ ବାଙ୍‌ମୟତା ପାହାଡ ଖୋଲରୁ
ଲଂଫ ଦେଇଥିବା ଉଦଗ୍ର କାମନାରେ
ଜଳପ୍ରପାତ ପରି
ଅମୃତଫଳ ଥିଲା ଅପହଞ୍ଚ ।

ଗଛ, ପ୍ରାଣୀ ସବୁଥିଲେ ରୋମାଞ୍ଚିତ
ଆସ୍ତେ ଆସ୍ତେ ସବୁ ସୂକ୍ଷ୍ମ ଆଶା
ମେଘପରି ଘୋଟି ଆସୁଥିଲେ
ଭବିଷ୍ୟତ ଚହଲି ଯାଉଥିଲା ବିନ୍ଦୁପରି
ଆକାଶରେ, ବଉଦରେ, ପବନରେ, ଶୂନ୍ୟତାରେ ।

କେହିଜଣେ ତପସ୍ୟାରେ
ସୃଷ୍ଟିର ନବନିର୍ମାଣରେ
ଏକ ସ୍ୱପ୍ନ
ଏକ ସଂଭାବନା
ସତରେ ହେଉକି ମିଛରେ
ପ୍ରାର୍ଥନାରେ ପ୍ରାର୍ଥନାରେ ।
 □□

# ଚାହାଁଣୀରେ ସମ୍ମୋହନ

କି ସମ୍ମୋହନ ସେ ଚାହାଁଣୀରେ ଜାଣେନା
କି ଆକର୍ଷଣ ସେ ସ୍ପର୍ଶର
ମୁଁ ପାଲଟି ଯାଏ ମୂକ
ସେ ଇଶ୍ୱର ନୁହଁତ ମାଟିର କୋଣାର୍କ ।

ମାଟି ଛୁଇଁଲେ ଗଢାହୁଏ ଠିକଣା
ମାଟି ଚିପୁଡିଲେ ନିଗିଡି ପଡେ ବାତ୍ସଲ୍ୟ
ମାଟିକୁ ଧରି ପାରିଲେ ଚିହ୍ନିହୁଏ ଜୀବନ
ଯେମିତି ସବୁ ସରଳ ସବୁ ବିହ୍ୱଳ;

ମୁଁ ଉଡି ଉଡି ... ପ୍ରଜାପତି
ତୁ ସ୍ୱପ୍ନ ସ୍ୱପ୍ନ ... ଆକାଶ
ମୁଁ ଗମ୍ଭୀରା ଭିତରେ ସାଇତା ରତ୍ନ
ଅଛଟ ଜହ୍ନ ନା ସୁରଭିଜା ବତାସ ?

ତମ ଜରାୟୁରେ ରୋପିତ ବୀଜ
ତମ ଶିରାରେ ଶିରାରେ ପଲ୍ଲବିତ ମୁଁ କବିତା
ତମ କୋଳର କାହ୍ନୁ ମୁଁ ଅଛଟ ଶୈଶବ ।
ତେବେ ଖେଳ ଭିତରେ ମାଟିଖେଳ
ବିଶ୍ୱାସ ଭିତରେ ନଦୀ ନାରୀର ସଂପର୍କ
ହୃଦୟ ଚହଲି ଗଲେ ମାଡିବସେ ପଥର

॥ ସମୟ କୁହେନା କିଛି ॥

ଭଙ୍ଗା ଭଙ୍ଗା ସ୍ୱପ୍ନ ପାରି ହେଉଥାଏ ଅଚିହ୍ନା କୂଳ;
ସବୁ କାହାଣୀ ଆରମ୍ଭ ହୁଏ ପିଲାବେଳୁ
ବଢେ ମାଟିରେ ବୀଜପତ୍ର ମେଲେ ଆକାଶକୁ ଛୁଏଁ
ନୀଡହରା ପକ୍ଷୀ ଗୀତଗାଏ
ପୋଖରୀର ପଦ୍ମ ଘୁଞ୍ଚୁଥାଏ
ଫଗୁଆ ଭିତରୁ ଭଅଁର ଆସେନା ଫୁଲ ଋତୁମତି ହୁଏ;

ଏମିତି କାହାଣୀ ମେଣ୍ଟା ସଜାଏ ମୋତେ
ଅଗରେ ବସି ଡାଳର ମୂଳକୁ କାଟେ
ଆକାଶ ଗୁଡିର ସୂତା ଛିଣ୍ଡେ
ମାଟିକୁ ଛୁଇଁବାକୁ ଆସି
ମଝି ରାସ୍ତାରେ ଲଟକିଥାଏ;

ଏମିତି ଗନ୍ତବ୍ୟକୁ ନେଇ
ଲେଖିହୁଏ କବିତା
ଅଭିଧାନ କଣ ଜାଣେନା
ବ୍ୟାକରଣ କଣ ଜାଣେନା
ମାଟି ସହିତ ଛୁଁ ଛୁଁ କା ଖେଳ
ସରିଆସେ ଜୀବନ
ପ୍ରଜାପତି ଡେଣାରେ ଲେଖାଥାଏ ଠିକଣା
ଗୁଡି ଉଡୁଥାଏ ତା ବାଗରେ
ପବନ ସହ ବଂଧୁତା କରି
ଲଟେଇର ନିର୍ଦ୍ଦେଶ ମାନେନା
କାହାର ଆକର୍ଷଣ, ଜାଣେନା;
କି ସମ୍ମୋହନ ମାଟିର ବାସ୍ନାରେ
ଅଜାଡି ପଡେ ଗୁଡି ଛୁଇଁଯାଏ ପ୍ରଜାପତି
ମୁଁ ମାଟିକୁ ଛୁଇଁ ଜୀବନ୍ୟାସ ପାଏ
ପ୍ରାରବ୍ଧର ସୁଖ ଶୋଷୁଥାଏ ।

❐❐

# ଯାହା ନେବାର ଥିଲା ନେଇ ପାରିନି

କିଛି ବି ନେଇ ପାରିନି, ଯାହା ନେବାର ଥିଲା
ଅଥଚ ନଦୀପାଣି, ଜଙ୍ଗଲର କାଠ
ପରିବେଶର ଧୂଆଁ ସବୁକୁ
ଏକାଠି କରିବା ଥିଲା
ଦୁଷ୍କର ଅସମ୍ଭବ ।

ନୀରବତା ଭିତରେ ଟକ୍‌ମକ୍
ଫୁଟୁଥିଲା ଶବ୍ଦ
ପୁଣି ସେ ସଜିଲ କଳା ଗଣ୍ଠିଲି
ବନ୍ୟପ୍ରାଣୀ ମାନେ ନିରୀହ ଦିଶିଲେ
ଉଦାସ ବି
ଗଛମାନେ କାନ୍ଦ କାନ୍ଦ ହେଲେ
ଦୁଃଖିତ ବି
ଘରକୁ ଚିହ୍ନି ପାରିଲେନି ଦଳେ ପଥିକ
ବାହୁଡିବା ଥିଲା ଅନିର୍ବାର୍ଯ୍ୟ
ବାହୁଡିଲେ, କୋଳାକୋଳି ହେଲେ ମଣିଷ ଦଳ ।

ଗୋଟେ ଇତିହାସ ରଚନା ହେଲା
ଡରଲୁଥିଲା ଚୂଡଙ୍ଗ, ସାରଙ୍ଗ, ବୁଆଳିଗଡ
ଶତ୍ରୁ ରକ୍ତରେ
ଚନ୍ଦ୍ରିକା ଦେବୀ ଝପଟିଥିଲା

ବାରହାତ ଖଣ୍ଡା ଧରି
ଛନ୍ଦକ ବିଦାୟ ଦେଉଥିଲା ରାଜକୁମାରଙ୍କୁ
ହିଁହିଁଉଥିଲା ସମୟ
ଦେଉଳର ନେତ
ଗ୍ରହଗ୍ରହାନ୍ତରୁ ଖସୁଥିଲା ପ୍ରେମ
ଆସ୍ତେ ଆସ୍ତେ ନିବିଡ ହେଉଥିଲା
ପରିଚୟ ଅନ୍ଧାରରେ ।

ବାମନ ମାଗୁଥିଲା ନାଭିଚକ୍ରର
ପାଦଟେକି ଭୂମି
ସହସ୍ର ସହସ୍ର ସମ୍ଭାବନା
ରୂପ ପାଉଥିଲା ଅରୂପ
ଅଭିଷେକରେ
ଲୁକ୍‌କାୟିତ ଇତିହାସ
ଉକୁଟି ଉଠୁଥିଲା
ଚନ୍ଦ୍ରିକା ଦେବୀର ନାଭି ପଦ୍ମରେ
ଗଜୁରୁଥିଲା ଭବିତବ୍ୟର ଭ୍ରୂଣ
ଚନ୍ଦକା ଜଙ୍ଗଲରେ ।

ପଦ୍ମ ପୋଖରୀରେ ହଜାଇ ସାରିଲା ପରେ
ଅଣ୍ଡାଳିହେବା ନିର୍ବୋଧତା
ହଜିଯାଇଥିବା ଧନକୁ, ମହାକାଳକୁ
ଟେକି ନଦେଇ
ମୋର ମୋର କହିବା ଇତିହାସ
ପିତୃଲୋକଙ୍କ ତର୍ପଣରେ ଉତ୍ସର୍ଗୀ ଦେଇଥିବା
ପାଣି ଟିକକ ପବନ ଟିକକ
ନିଜର ନୁହେଁ, ସମୟର ।

ପାହାଡକୁ ଘେରି ତାର ଦୁର୍ଗ
ପାଦ ପାଖରେ ନଈ
ଚାରିପଟେ ଗଡଖାଇ

ଦୂରରେ କ୍ଷୀଣ ଆଲୋକପରି ରାତିରେ
ବୋଧେ ଗାଁ
ଭିକ୍ଷୁକର ଝୁଲିପରି ଦିଗନ୍ତର ହସ
ବୋଧେ ବଣ
ପଛକୁ ଚାହିଁଲେ ନିର୍ବୋଧ ହାହାକାର
ଦେଖାଯାଏ କଉତୁକିଆ ଶ୍ରାବଣ
ବଣ ସେପାରେ ନଈ
କିଛି ଦୃଶ୍ୟ କିଛି ଅଦୃଶ୍ୟ ।

ଯାହା ଭୋଗିବାର ଥିଲା
ଭୋଗି ପାରିନି
ଯାହା ନେବାର ଥିଲା
କିଛିବି ନେଇ ପାରିନି
କେବଳ ଆକାଶକୁ ଆବୋରି
ବସିଛି ବାମନ ଭିକ୍ଷୁକ
ଅଦୃଶ୍ୟ ତୃତୀୟ ପାଦ
କିଛି ବି ନେଇପାରିନି, ଯାହା ନେବାରଥିଲା
ଅଥଚ ସବୁ ଅଛି
ଯାହା ଯେମିତି ।
□□

# ପୂର୍ବ ପୁରୁଷ

ଓଲଟ ବୃକ୍ଷରେ
ହଂସ ଖେଳିଲେ
ମନେ ପଡନ୍ତି ସେମାନେ
ଯେଉଁମାନେ ବାଟ କଢାଇ ଆଣିଥିଲେ
ଅଂଧାରରୁ ଆଲୋକକୁ ।

ବାରମ୍ବାର ସୃଜନରେ ସୃଷ୍ଟ ବିମ୍ବ
ତାରା ମଣ୍ଡଳକୁ ଆଲୋକିତ କରେ
ପଦ୍ମପତ୍ରରେ କୁଟୀକମ ଇତିହାସର
ଅଫେରା ସ୍ୱପ୍ନ ପରି ଚୁପ୍ ଚାପ୍
ହୃଦୟକୁ କିଲ୍ ବିଲ୍ କରେ ।

ଜଙ୍ଗଲ ଭିତରେ ଏକାକୀ କାଠୁରିଆ
କାଠ କାଟୁଥାଏ ତ କାଟୁଥାଏ
ଚକ୍‌କର କାଟୁଥାଏ ଶଙ୍ଖଚିଲ
ଆକାଶ ସାରା
ତ ବ୍ରହ୍ମାଣ୍ଡ ଏଇଠାରେ
ଛାଇ ନଥାଏ ଗଛର
ପକ୍ଷୀର ଉଡାଣ ପାଲଟୁଥାଏ ହସରେ
ସତରେ କିମ୍ବା ମିଛରେ
ଓଲଟ ବୃକ୍ଷରେ ଇଡା ପିଙ୍ଗଳାର ମିଳନ

## ।। ସମୟ କୁହେନା କିଛି ।।

ଆମ ବାହୁଡ଼ିବା ବେଳ
ସବୁକିଛି ଗୋପନୀୟ
ତାରା ଗଣା ବି
ଘୋଡା ଚଢା ବି ।

ସ୍ୱପ୍ନ ଦେଖାରେ ହେଉ କି ମିଛରେ
ହୃଦ ଭିତରେ ଛାଇ ଗଜୁରେ
ଶବ୍‌ଦର ନୀରବତାର
ନାଭିଚକ୍ରରେ ସ୍ଥାପନ ହୁଏ
ନିର୍ଯ୍ୟାତନାର ମୁଖଶାଳା
ଶତାବ୍ଦୀର
ଓଲଟ ବୃକ୍ଷ ହିଁ ତ ଜୀବନ
ଆମ ପୂର୍ବ ପୁରୁଷର ।
□□

# ରୂପାନ୍ତର

ମୁଁ ଜାଣେନା ପ୍ରେମ କ'ଣ,
ସମୟ ତୀରରେ ଆମେ ଏକାଠି
ମୁଁ ଚାହିଁଲି ତୁମକୁ
ତମେ ମୋତେ, ଏତିକି ।

ଅନ୍ତରଖୋଲି ଦେବାକୁ ତମଠି
ହାଇଁପାଇଁ, କିନ୍ତୁ ମୁଁ କହୁଛି ଶୁଣ,
ତମେବି ସବୁ ଖୋଲି ବସିଚ ବିପଣୀ
ମୁଁ ଗରାଖ ବୋଲି ଜାଣି ସାରିଲା ବେଳକୁ
ତମେ କୁଆଡେ ଚାଲିଗଲଣି ।

ମୋ ଅତୀତର ଚିତ୍ରପଟକୁ ଧରି
ତମେ ବାହୁନୁଛ ତ ମୁଁ କେନ୍ଦେରା
ବଜାଇ ଗୁଣ ଗାଉଛି ପ୍ରେମର
କୁଂଭିପଟିଆ ବାବାଜି ପରି ଗାଁ ଦାଣ୍ଡରେ ।

ଆମ ପରିଚୟ ରୂପ ଭେକ ବଦଳି ଗଲାଣି
ଯା' ଭିତରେ । ସମୟ ବି ।
ମୁଁ ଧିରେ ଧିରେ ରୂପାନ୍ତରିତ ହେଉଛି
ସରୀସୃପରେ । ତମେ ବଦଳି ସାରିଲଣି ଗଛରେ ।
ତୁମ କାଣ୍ଡକୁ ଉଲ୍ଲାସରେ ଜାବୁଡି ମୁଁ

ଗୁରୁଣ୍ଡୁଛି ଉପରକୁ ଉପର
ଗୋଟିଏ ତାଳକୁ ଆଶ୍ରା କରି
ବାହୁନୁଛି କଳା କୋଇଲିଟିଏ, ସେତେବେଳୁ
ଗାଁ ଦାଣ୍ଡସାରା ଖେଦିଯାଉଛି ଜାନୁଘଣ୍ଟ ପର୍ଶୁରାମ
ବିକ୍ରମରେ । ଶୂନ୍ୟକୁ ଦ୍ୱାହି ଦେଇ
ସଂଧ୍ୟା ଦଣ୍ଡବତ ମାରୁଛି ଅଲେଖ ଗୋସେଇଁ,
ପୋଖରୀ ତୁଠରେ ରଜାଝିଅ କାନ୍ଦୁଛି
ପଦୁଅଁ ପାଇଁ, କଳାନାଗ ଦଂଶିବାକୁ ତିଆର
ସ୍ୱପ୍ନରେ ସ୍ୱପ୍ନରେ ।

ସ୍ୱପ୍ନରେ ମୁଁ ଫେରିବାକୁ ଚାହୁଁଛି
ବାସ୍ତବତାକୁ, ପ୍ରେମକୁ ।
ସମୟ ତୀରରେ
ମୁଁ ବଦଳି ଯାଉଛି ମୁହୂର୍ତ୍ତକୁ ମୁହୂର୍ତ୍ତ
ତମେ ବି
ମୁଁ ଚାହିଁଲି ତମକୁ, ତମେ ମୋତେ
ବାସ୍ ଏତିକି ବାକି ସବୁ ସ୍ୱପ୍ନ
ଅଳୀକ ବି ।
□□

# ଜୀବନ ପ୍ରେମ

ଜୀବନ ଓସ୍ତାଦୀ କଲେ ପ୍ରେମ ହୁଏ,
ଜଙ୍ଗଲ ଓସ୍ତାଦୀ କଲେ ଜୀବନ ।

କଇଁ ଫୁଟୁଛି କି
କାଶତଣ୍ଡି ହସୁଛି କି
ଜହ୍ନ ଲୁଚିଛି କି
ଖୋଜି ଖୋଜି ପାଉନି କାହାକୁ
ନା ଜୀବନକୁ
ନା ପ୍ରେମକୁ ।

କୁହୁଡ଼ି ବେଢ଼ାଇ ଦିଗନ୍ତ
ସଲ୍ଲଜ ଚାହାଁଣୀରେ ଚାହିଁଛି
ପାଦର ଅଳତା ଦେଖାଇ କଇଁ
ହିଲ୍ଲୋଳରେ କବିତା ପଢ଼ୁଛି
ଜହ୍ନର ଗୋଲ ମୁହଁ ଆକାଶର
ପଡିଆରାରୁ ଛିଡିକି ଆସୁଛି
ପୋଖରି ପାଣିରେ ପହଁରି ।

ସୁନାଗୋରି କଇଁ ମଉଆଲା
ଘୋ ଘୋ ରାଣୀ ଖେଳରେ
କେଉଁ ପୁରୁଣା ଗୀତର ଧୁନ୍‌କୁ

ଦୋହରାଇ ଜହ୍ନ ଗୋଡାଇଛି ପଛରେ
ସଞ୍ଜ ନଇଁଲା ବେଳକୁ ଏ ଖେଳ;
ଜୀବନର ପ୍ରେମର ।

ଜହ୍ନ ଓସ୍ତାଦୀ କଲେ
ପାଣିରେ ଖଳ ଖଳ ଜୀବନ
କଇଁ ମୁହଁ ଲୁଚା ଦେଲେ
ଢଳ ଢଳ ପ୍ରେମ ।
□□

# ସବୁଠି ସେହିଁ ଥିଲା

ମୁଁ ଜାଣେନା କିଏ ଆସିଥିଲା
ଗାଁ ସେପଟୁ ନଈ ଧାରରୁ
ବାହୁନା ପରି;
ସେ କହିଲା ନଈର କୂଳ
ମୁଁ କହିଲି ଚଞ୍ଚଳ ।

ନଈ ପରି ମୁଁ ବହିବାକୁ
ଆରମ୍ଭ କଲି
ସେ କହିଲା ମୋ ଆଲିଙ୍ଗନରେ ଥା'
ଗୀତ ଗାଇବାକୁ ମୋର
ମନ କହିଲା
ସେ କହିଲା କଳକଳ ସ୍ୱନରେ ଗା'

ମୁଁ ଯାହା ଗାଇଲି
ମୁଁ ଯେତେ ବହିଲି
ଅଲଗା ଜଣେ କିଏ ଆବୋରି
ବସିଥିଲା
ପ୍ରାଚୀନ ଯୁଗର ମୂର୍ତ୍ତିଟିଏ ପରି
ସ୍ମିତରେ ସ୍ମିତରେ
ମୋତେ ଗୋଟା ପଣେ
ଆପଣାର କରି ସାରିଥିଲା ।

ସେ କହିଲା
ନାଆରେ ଯା'
ବା ବାଆରେ ଯା'
ପାଣିରେ ଯା'
ବା ଆକାଶରେ ଯା'
ମୋ ଆଲିଙ୍ଗନ ଭିତରେ ଯା'
ମୋ ପରଶରେ ଯା' ।

ମୁଁ ନଈ ପାଲଟି ପାରୁନଥିଲି
ସେ କିନ୍ତୁ
କୂଳ ହୋଇ ମୋତେ
ଆବୋରି ଥିଲା
ମୁଁ ଯେତେ ବହିଲେ
ଯେତେ ଗାଇଲେ
ସବୁଠି ସେ ହିଁ ଥିଲା ।

□□

# ସମୟ ହୋଇ

ଗଛ ନୀରବ ନିସ୍ପନ୍ଦ ହୋଇ
ଆକାଶର ରଙ୍ଗ ମହୋତ୍ସବକୁ ଦେଖୁଥାଏ
ପ୍ରତିଜ୍ଞାବଦ୍ଧ ପକ୍ଷୀଦଳ
ମେଘ ସହିତ ଏକାତ୍ମ ଅଥଚ ଭିନ୍ନ ଠାଣିରେ
ଉଡନ୍ତି, ପଡିଉଠି ବିଭିନ୍ନ ଦିଗକୁ
ସମୟ ହୋଇଯାନ୍ତି ।

ପତ୍ର ଝଡା ଗଛର ନୀରବ ଅଶ୍ରୁ
ଘାସର କାକର ବିନ୍ଦୁ
ସାଧବ ବୋହୂର ଲାଲେଲାଲ ସ୍ୱପ୍ନ ଓ
ପଦଯାତ୍ରା, ମାଟିକୁ ରଙ୍ଗୀନ କରେ
ପକ୍ଷୀମାନେ ନିଜକୁ ଆକାଶଠୁ ମୁକ୍ତ କରି
ମାଟିରେ ରାସ୍ତା ଖୋଜନ୍ତି
ପବନ ସଂଧିରେ ମନ୍ଦିର ଭଳି
ଗୀର୍ଜା ଭଳି ବସା ତିଆରନ୍ତି ।

ମେଘ ସହିତ ସବୁବେଳେ ପକ୍ଷୀର ଅହନ୍ତା
ପାପୀର ସ୍ୱୀକାରୋକ୍ତି ଭଳି
ପବନର ଗଜଲ ଗଛକୁ ଚଳମାନ୍ କରେ
ପକ୍ଷୀର ନିରାପତ୍ତା ପାଇଁ ସନ୍ଧିପତ୍ରରେ
ବଜ୍ର ଓ ବିଜୁଳି ଗଛ ସହିତ ସ୍ୱାକ୍ଷର କରେ
ବର୍ଷା ଦିନ ପରି ।

## ।। ସମୟ କୁହେନା କିଛି ।।

ପକ୍ଷୀ ଆତ୍ମକୈନ୍ଦ୍ରିକ ହୋଇପାରେନା
ଗଛ କୋରଡରେ
ଯୋଗୀପରି ଅନ୍ତସ୍ଥ ଅଥଚ
ସର୍ବବ୍ୟାପୀ
ଆତ୍ମଲୀନ ଅଥଚ ପରୋପକାରୀ
ବନ୍ଦ ଘରେ ପବନକୁ ରୁନ୍ଧି
ସମୟକୁ ଛାଡୁଥାଏ ।

ସମସ୍ତ ସଂକଳ୍ପ ପ୍ରଖର ହେଉଥାଏ
ପ୍ରକୃତିସ୍ଥ ଆସ୍ଥାରେ
ସବୁକିଛି ଲୀନ ହେଉଥାଏ ମାଟିରେ
ଚେତନା ବ୍ୟତୀତ
ସବୁକିଛି ଲିଭି ସାରିଥାଏ ଆକାଶରେ
ଗଛ ବ୍ୟତୀତ ।

ପକ୍ଷୀ ଗଛ ମେଘ ଓ ପବନ
ଆକାଶକୁ ପୁଣି ରଙ୍ଗଉଥାନ୍ତି
ସଂଭାବନାମୟ ସୂର୍ଯ୍ୟୋଦୟ ପାଇଁ
ସମୟ ହୋଇ ।
□□

# ସମୁଦ୍ର ପରି କଥା କୁହେ

ସମୁଦ୍ର ପରି କଥା କୁହେ
ଆକାଶ ପରି ନୀରବ ଥାଏ
ପାଦ ପକାଇଲେ ଝରଣା
ହାତ ପାହାନ୍ତାରେ ଅପ୍ସରା ।

ସୌନ୍ଦର୍ଯ୍ୟର ବଗିଚାରେ ଫୁଲପରି
ପକ୍ଷୀର ପ୍ରେମ ପରି
ପ୍ରଜାପତିର ରଙ୍ଗପରି
ମୟୂରର ନାଚପରି
ସେ ଝିଲ୍ ଝିଲ୍ ବୁଣି ହୋଇପଡେ ପବନ ପରି ।

ଛୁଇଁ ଦେଲେ ନଇଁ ଆସେ ମେଘ
ଥମଥମ ଭାବ
ଆଖି ବୁଜିଲେ ପ୍ରେମ ପ୍ରେମ
ସ୍ୱପ୍ନର ରଙ୍ଗ ମହୋତ୍ସବ ।

ଗୋଟିଏ ଶବ୍ଦରେ ଭାବମୟ ଆତ୍ମସମର୍ପଣ
ଗୋଟିଏ ଇଶାରାରେ ହୃଦୟର
ଦ୍ୱାର ଉନ୍ମୋଚନ ।

ସମୁଦ୍ର ପରି ଗୋଟାପଣେ ଛଳଛଳ
ଆକାଶ ପରି କୋମଳ ।

ㅁㅁ

# ତମେ ଅଛ ବୋଲି

ମୁଁ ଅଛି ଏଠାରେ ତୁମେ ଜାଣନା
ତମେ ନାହଁ ମୁଁ ଅନୁଭବୁଛି, ଅଛ
ଆମର ପରିଚୟ ଏପରି;
ହଜାରେ ଆଲୋକ ବର୍ଷ ତଳେ
ତମେ ଥିଲ, ଏବେବି ରହିଛ
ମୁଁ ଅଛି ତମକୁ ଝୁରୁଛି
ଗୁଣି ହେଉଛି ତୁମ ରୂପ ତୁମ ଝଲକ
ଇଏ କ'ଣ ପ୍ରେମ ? କି ପ୍ରେମ ?

ତମର ଦେଖା ନାହିଁ
ତମର ଛୁଆଁ ନାହିଁ
କଥା ଶୁଣିନି କେବେ ବି ତମର
ତମେ ଯୋଉଠି ଅଛ
ତା'ର ଠିକଣା ଜଣା ନାହିଁ ।

ମୋର ପ୍ରଚୀନ କାନ୍ଦଣାର ଅଂଶବିଶେଷ
ହୋଇ ଯାଇଛି ପ୍ରାର୍ଥନା
ତମର ରୂପ ମୁହୂର୍ତ୍ତ ମୁହୂର୍ତ୍ତ ବଦଳୁଛି
କବିତା ପାଲଟୁଛି ପ୍ରାର୍ଥନା
ଭଣିତା ହେଉଛି ତମ ନାଁ ରେ
ସବୁ ଯୁଗରେ ସବୁ କାଳରେ

ପଥର ପାଲଟୁଛି ନାରୀ
କାଳେ ନାଆ ନାରୀ ପାଲଟିବ ବୋଲି
ଆଶଂକା ଖେଳୁଛି ସାଧାରଣରେ ।

ଏଇ ଘମାଘୋଟ ବର୍ଷା ଆସିଲାଣି
ତମେ ଟେକି ଧରିଛ ପାହାଡ ଛତା
ଆଶଙ୍କାରେ ମୁଁ
ଇଏ କ'ଣ ସବୁଠୁ ନିରାପଦ ସ୍ଥଳ ?

ତମେ ହସିଲ
ମୁଁ ଦେଖି ପାରୁନି
ପାହାଡ ତଳେ ମୁଁ ଏଥର ଆଶ୍ୱସ୍ତ
ତମେ କୋଉଠି ହେଲେ ଅଛ ।

ପପ

# ଐତିହ୍ୟର ସ୍ୱରସନ୍ଧି

ତୁମେ ମୋର କା'
ବିଶ୍ୱରୂପ, ଅନ୍ଧାରର ସୂର୍ଯ୍ୟ
ଚିଲିକା ।

ଜୀବନର ବାଙ୍କ ସାରା ତୁମରି ବିସ୍ତାର
ତରଙ୍ଗ ତରଙ୍ଗ ଭାବ ଅନ୍ତିମ ସ୍ୱପ୍ନର ବିରାମ
କେଉଁଠି ନା କେଉଁଠି ହଜିଯାଏ
ଭୋଗିବାର ପାର୍ବଣ
ତୃଷାର ଦେବୀ ତୁମେ ଲୁହର ନାୟିକା
ପାରିକୁଦ ଝିଅ ଖୋଜେ ଆଭିଜାତ୍ୟର ପ୍ରେମିକ
ରମ୍ଭାର ଅଥଳ ଓଠ ଶିହରି ଉଠେ
ନିର୍ବିକଳ୍ପ ଭୋଗର ଶେଯରେ
ସମାଂତରାଳ ଭୂମି ଓ ଆକାଶ
ଛୁଇଁ ଛୁଇଁ ଚକ୍ରବାକ ଗାଉଥାଏ ମିଳନର ଗୀତ ।

ଛାଇ ବି ଘନିଷ୍ଠ ହୁଏ ଜଳର
ସଂଶୟର ପୃଷ୍ଠାଖୋଲି
କୁଦନାସୀ, ଶିଖରୀ ମେଳରେ
ଠିଆହୁଏ ପରମ ପୁରୁଷ
ବାଚ୍ୟ ସିଏ ବାଚକ ବି ସିଏ
ସିଏ ଋତୁ ସିଏ ବି ପୁଷ୍ପିତ

॥ ସମୟ କୁହେନା କିଛି ॥

ସିଏ ପ୍ରେମ ସିଏ ବି ପ୍ରେମିକ
ସମୟର ଶିରସ୍ତ୍ରାଣ ଖୋଲେ ନିର୍ଘାତ ଘାତକ;

ପ୍ରକୃତିର ସୀମା ପାରେ କାଳିଜାଈ କାନ୍ଦେ
ସରଦେଇ ଚଟି ଘରେ ମହମହ ଅଗୁରୁର ବାସ୍ନା
ହଟିଯାଏ ଅଜସ୍ର ବଂଚନା
ଦୁଃଖ ଦ୍ରୋହ କ୍ରମ ଅଭିମାନ
ମାଣିକର ଭାଗ୍ୟ
ଯୋଡି ହୁଏ ଭବିତବ୍ୟ ସୁନାର ଶୃଂଖଳ
ସମୟର କୃତଜ୍ଞ ସେ ଉଡିଆସେ ଦୀର୍ଘ ଦୂର ପଥ
ଆତ୍ମାରେ ମିଳନାକାଂକ୍ଷା
ଦୃଷ୍ଟିରେ ଅପରୂପା ସ୍ମୃତିର ନାୟିକା
ମାଣିକରୁ କାଳିଜାଈ
କାରୁବାକୀ ସ୍ୱପ୍ନ ଦେଇ
ଦେଖେ ଆଜି ଅନୂଢା ଚିଲିକା ।

ପଙ୍କ ପଙ୍କ ମାଛ ଗଂଧ
ମାଛରଙ୍କା ତର ତର ପ୍ରଥମ ଧାଡିରୁ
ସାରସର ସ୍ୱପ୍ନତଳେ ଲଦାଖ ଓ ପାକିସ୍ଥାନ ଠାରୁ
ସବୁ ଏଠି ଏକୀଭୂତ ଏକାକାର
ସବାଶେଷ ଧାଡି
ପ୍ରେମର ଜୟ ହୁଏ ପ୍ରତୀକ୍ଷାର ଅନ୍ତିମ ଦିହୁଡି ।

ପକ୍ଷୀ ତୁମେ ଚିଲିକାର ନୀଳ
ଆକାଶର ଅସୀମ ବିସ୍ତାର
ମେଘମୁକ୍ତ ଭାଲେରି ଶିଖରେ
ନୀଡରଚେ ପ୍ରଶ୍ନକାଳ ସବୁ
ପକ୍ଷୀ ପ୍ରେମିକା
ମାଟି ଏଠି ସମକାଳ
ଐତିହ୍ୟ ଓ ଐହିକର ସ୍ୱରସନ୍ଧି ନିଳାମ୍ବୁ ଚିଲିକା ।
□□

# ବିରହର ଶିରସ୍ତ୍ରାଣ

ହଁ...
ତୁମକୁ ହିଁ ଭଲପାଏ ଆତ୍ମାପରି
ମୁଁ କହୁଛି କଣ୍ଠ ଫଟାଇ
ହେଲେ ତମେ ...
ସତେ କଣ ମୃଗତୃଷ୍ଣା
ଅକ୍ଷୟ ପ୍ରତୀକ୍ଷା ।।।

ମୋ କଥା ଭଲ
ତମେ ନୀରବ
ମୁଁ ନିରୀହ
ତମେ କୁଟୀଳ
ମୁଁ ହୃଦୟ ଖୋଲି ଦେଇଛି
ତମେ ବନ୍ଦ କରିଛ ଦରଜା
ମୋରି ଭାଗ୍ୟ ଖରାପ
ଏ କଥା କହି ପାରେନା କେବେବି ।

ମୁଁ ରାଗି ପାରେନା ତମର
ସହସ୍ର ନିରବତା ସତ୍ତ୍ୱେ
ତୁମର ନିରୁତ୍ତର ରହିବା ବାଧେ
ମୋର ପ୍ରଗଲ୍ଭତା କମି କମି ଆସେ ।

।। ସମୟ କୁହେନା କିଛି ।।

ପ୍ରେମରେ ସବୁକିଛି ନ୍ୟାୟ
ସବୁକିଛି କର୍ତ୍ତବ୍ୟ
କୌଣସି ସୂତ୍ର ତୁମକୁ
ବାଂଧି ପାରେନା
ସନ୍ଧିରେ ବା ଫିକରରେ
କଥାରେ ନା ଚାଟୁକାରିତାରେ
ଆତ୍ମ ନିବେଦନରେ ନା ଆତ୍ମ ପ୍ରକାଶରେ
କୌଣସିଥିରେ ବି ନୁହେଁ ।

ହଁ ... ମୁଁ କହିପାରେ
ମୋର ଅତୀତର କାରନାମା
ତମର ପ୍ରଶଂସାରେ
ଆତ୍ମସମ୍ମାନ ହରାଇ ପାରେନା
ହାତ ପାତି ତମର କୃପାଭିକ୍ଷା କରିବା
ତମ ଅନୁକଂପାକୁ ଅପେକ୍ଷା କରିବା ହୁଏନା ;
କପଟ ତୋଷାମଦିରେ ତୁମକୁ
ବଶ କରିବା
ସୌନ୍ଦର୍ଯ୍ୟର ଦ୍ୱାହି ଦେଇ
ବିବସ୍ତ୍ର କରିବା
ଋତୁମତୀ ବାସନ୍ତୀର ଅଗଣାରେ
ମିଳନର ସାହାନାଇ ବଜାଇବା
ମୁଁ କରେନା ।

ହଁ... ମୁଁ ପ୍ରେମକରେ
ସଚ୍ଚା ପ୍ରେମ
ବୟସ୍କ ହୃଦୟକୁ ଅଭିଜ୍ଞତାରେ ସଜାଇ
ଅପେକ୍ଷା କରେ
ବିରହକୁ ଶିରସ୍ତ୍ରାଣ ମାନି
ମୁଣ୍ଡାଇ ଥାଏ ।
□□

# ଅଦେଖା

କଳା ନା ଗୋରା ତୁମ ରୂପ
ତମ କଥାରେ ମୁଁ ବଶୀଭୂତ ଆକର୍ଷିତ
ତମେ ମୋ କଥା ହିଁ କହିଲ
କେବଳ ଯା ବଖାଣିଲ ତୁମର ଦୁଃଖ ବୋଲି ।

ତମକୁ ସବୁ ଦୁଃଖ ଦେଖେଇ ଦେବାକୁ ମନ ହେଉଛି
ଖୋଲି ଦେବାକୁ ହୃଦୟର ଦ୍ୱାର, ବାସ୍
ତମକୁ ଛୁଇଁ ଦେବାକୁ ମନ କହୁଛି, ଶୁଣ
ମନର ଅନ୍ଧାରି ଗହ୍ୱରରୁ ଉବୁକି ଆସୁଚି ଭଲ ପାଇବା ,
ମୁଁ ତୁମକୁ ଦେଖି ପାରୁନି, ଛୁଇଁ ବି ପାରୁନି
ତମେ ତମେ କି ମୁଁ ଜାଣେନା ।

ତମେ ନଈ କୂଳରେ କି ସମୁଦ୍ର ବେଳାରେ
ଜାଣେନା,
ତମେ ଝାଉଁ ଜଙ୍ଗଲରେ କି ଶାଳ ଜଙ୍ଗଲରେ
ବୁଝି ପାରେନା ;
ତମେ କହି ଚାଲିଥିଲ
ମାଟି ମାଟି ନୁହଁ ପ୍ରସୂତି ଭୂମି
ଦୁଃଖ ଦୁଃଖ ନୁହଁ ସ୍ମୃତି ରାତି ।

ଏଇ ଯୋଉ ପବନ
ଏଇ ଯୋଉ କୋଇଲିର ଗୀତ

ଫେଂଟି ହୋଇ ଗାଉଚି ମୋର କାହାଣୀ
ତାହା କ'ଣ ତୁମର ?

ତମକୁ ଦେଖିବି ବୋଲି ଭାବିଲାବେଳକୁ
ମୋର ଆଖି ନାହିଁ
ତମକୁ ଛୁଇଁବି ବୋଲି ଅଣ୍ଡାଳିଲାବେଳକୁ
କିଛି ନାହିଁ

ଯା' ହେତୁ,
ଏତେବେଳ ନିଜ ସହ ହିଁ
କଥା ହେଉଥିଲି ।

□□

# ଅଭିଳାଷ

ପୃଥିବୀ ସେ ପାଖରୁ କିଏ
ଡାକୁଛି
ସୂର୍ଯ୍ୟ ଉହାଡରୁ ଛାଇଟିଏ
ଝରଣାର ଛଳଛଳ ନୀରବ ଗୀତକୁ
ଚହଲାଇ କିଏ...

ନଦୀଟିଏ ଗଢୁଛି ହୃଦୟରେ
ଅହରହ ସମୁଦ୍ରର ଆକର୍ଷଣ
ଝାଉଁବଣର କୋରସ ଭିତରେ
ଉଙ୍କି ମାରୁଛି ଭବିଷ୍ୟତର
ବିକଟାଳ ରୂପ କିଏ...
ଜାଳିଦେଉଛି ପ୍ରକୃତିର ନିରାଡମ୍ବର
ସୌନ୍ଦର୍ଯ୍ୟକୁ
ଅଶୁଭ ଜହ୍ନରାତି ପରି
ଜୀବନ ଖାଁ ଖାଁ
ଭୟାର୍ତ୍ତ ଲେଲିହାନ ।

କିଶୋରୀ ପ୍ରେମିକାର ଇଂଗିତ
ବୁଝିପାରେନା ପୌଢ ପ୍ରେମିକ
ଅନେକ ଋତୁ ବିତିଯାଏ ଗୋଟିଏ
ସ୍ୱପ୍ନରେ ଟାଂଗର ଭୂଇଁରେ

॥ ସମୟ କୁହେନା କିଛି ॥

ପଦ୍ମ ଫୁଟେନା
ଅଂଶୁପାର ଅଂଶ ମହାନଦୀରେ
ମିଶେନା
ପ୍ରେମିକର କଥା ଭାବିଭାବି କିଏ
ସମୟକୁ ଉଜେଇଁ ଦିଏ
ପାହାଡ ଶୀର୍ଷରେ
ମାନସରୋବରର ସାରସ
ଘର ବସାଏ ପ୍ରେମର ଆକର୍ଷଣରେ
ରତ୍ନମତୀ କିଶୋରୀ
ବୟସ୍କ ପ୍ରେମରେ ମତୁଆଲା କିଏ...
ଭାଙ୍ଗିଦିଏ ତାର କଳ୍ପନା
ଦେହ ଭିତରେ ଲହଡି ଭାଙ୍ଗେ ଚିଲିକା
କିଏ ଡାକେ କାଳିଜାଈ ଶିଖରରୁ
ରୋମାଂଚ ଭରା ହନିମୁନ୍ ଦ୍ୱୀପରେ
ଦଳଦଳ ଗେଣ୍ଡାଳିଆ !

ପୃଥିବୀ ସରେନା ଗୋଟିଏ ଚିଲିକାରେ
ଗୋଟିଏ ସମୁଦ୍ରରେ
ମନ ପରି
ପ୍ରେମ ପରି ଅସରନ୍ତି କୋଠଘରେ
କିଏ ଜଣେ ଗୁମୁରୁଥାଏ
ପୂର୍ଣ୍ଣମୀ ରାତିର ଜୁଆର ପରି
ଫୁଲି ଫୁଲି କିଏ...

ମୋର ପ୍ରେମିକା
ନା ମୋ ଭିତରର ଚିଲିକା ?
□□

# ଆକସ୍ମିକ ଦେଖା

ଆଉ କେବେ ତମ ସହ  ଦେଖାହେବ
ମୁଁ ଜାଣେନା
ଅଥଚ ମୋ ନିଭୃତ ଚେତନାରେ
ଲହଡି ଭାଙ୍ଗୁଥିବ ତମର ନୀରବ
ଶୋଭାଯାତ୍ରା
ସ୍ମରଣାତୀତ ସ୍ମୃତିର ଇଲାକାରେ
ତମେ ଆସୁଥିବ ବାରବାର
ମୁଁ ଭେଟୁଥିବି ତୁମକୁ
ସେଇଠି
ଯୋଉଠି କେହିବି ନଥିବେ
ଜୀବନଯାତ୍ରା ସ୍ୱଚ୍ଛନ୍ଦ ଓ ବେଗବାନ ଥିବ
ଥିବ ନିଥର ନିଷ୍ପ୍ରାଣ ।

ମୁଁ ଚାହିଁଥିଲି ତମ ଭିତରେ
ମନ୍ଦିରର ସୁନୀଳ ଚିରାଳ ପରି
ଆକାଶରେ
ପକ୍ଷୀର କଳଗାନ ପରି ଯୌବନୀ
ଝର୍ଣ୍ଣାର ପାହାଡୀ ସଂଗୀତରେ
ଅରଣ୍ୟର ଅନ୍ଧୁଆଳରେ ଧରିତ୍ରୀର
ଲୁଚକାଳି ପରି

## ।। ସମୟ କୁହେନା କିଛି ।।

ଆହ୍ଲାଦିତ ସମୁଦ୍ର ପରି
ପୂର୍ଣ୍ଣିମାର ଚନ୍ଦ୍ରୋଜ୍ଜ୍ୱଳ ଶିହରଣ ତଳେ
ବହୁବର୍ଣ୍ଣା ଇଚ୍ଛାସବୁ ଖୁସିଥିଲେ
ଆବେଗର ଗତି ତୀବ୍ର ଥିଲା
ପରଂପରା ସ୍ୱୟଂସିଦ୍ଧ
ହ୍ରଦରେ ଉଲ୍ଲସିତ ମରାଳଙ୍କ ସମାଗମ
ମୁଁ ବୟସ୍କ ଶିଶୁଟିଏ କୁଦା ମାରୁଥିଲି
ତୁମର କୁମାରୀ କୋଳକୁ
ଗିର୍ ଜଙ୍ଗଲର ସିଂହ ପରି
ପ୍ରକୃତି କୋଳକୁ
ସାତପଡାର ଡଲଫିନ୍ ପରି
ମଗରମୁଖକୁ
ଲଜ୍ଜାବତୀ ପଦ୍ମଫୁଲ ପରି
ଅଂଶୁପାକୁ;

ତମ ମୋ ସଂପର୍କ ଆକସ୍ମିକ
ମୁହୂର୍ତ୍ତର ଫଳ
ତମେ ଆସିଥିଲ ସୁନେଲି ସ୍ମୃତିର ପରୀ
ସ୍ୱପ୍ନସ୍ୱପ୍ନ ହୃଦୟର ନୀଳିମାକୁ ବୋଲି
ପୁଣି ସେମିତି ନିରବରେ ଅପସରିଗଲ
ମୋ ପ୍ରାଣକୁ ବାଲିଚର କରି
ରୁକ୍ଷ ରୁକ୍ଷ କଂଟା ଗୁଳ୍ମ ଭରି ।
□□

# କୋଣାର୍କ ଗଡ଼ା

ତାଆରି ହସରେ ଆଜି ଖାଲି
ଫାଟି ପଡୁଚି ଚନ୍ଦ୍ରଭାଗା
ମନେ ପଡୁଚି କୋଣାର୍କ
ବର୍ଷର ଶେଷ ଶୀତର ରାତି
ଅତୃପ୍ତ ଭୂତକୋଠୀ; ।

ଆଜି ରାତି ପିଲାଦିନର ରାତି
କେଉଁଠି କିଛି ନାହିଁ ଖୋଜିବାର
ମନେ ପଡିବାର, ଚିହ୍ନିବାର
ହୃଦସ୍ତ ପ୍ରେମିକା ଭୁଲିଗଲାଣି ସବୁ ଶବ୍ଦ
ପ୍ରେମପତ୍ରର ।

ବାଘର ଆକସ୍ମିକ ଆବିର୍ଭାବରେ
ମୃଗଯୂଥର ପଳାୟନ
ଚିତ୍ରିତ ପ୍ରଜାପତିର ଦୁଷ୍ଟାମି
ମୁହଁ ଲୁଚାଇ ଦେଲାଣି
ଚନ୍ଦ୍ରଉଦିଆ ରାତିରେ ପୁଣିଥରେ
ମଂଚସ୍ଥ ହେବ ଗାଁ ପେଣ୍ଡାଲରେ
"ରାଣୀ ହଂସପୁରର ରାଜକେମା"
ପ୍ରେମିକ ବର୍ଷବର୍ଷର ବର୍ଣ୍ଣମାଳାରୁ
ଘୋଷିଛି ବଛାବଛା ଶବ୍ଦ

## ।। ସମୟ କୁହେନା କିଛି ।।

ମେହନତି ମଣିଷର ଝାଳରୁ
ବିପ୍ଳବୀର ରକ୍ତରୁ
ସେ ଜାଣିଛି ପ୍ରେମ କରିବାର କଳା
ନଅତାଲାରେ ରାସ ଚାଲିଚି
ସରୁନି ରାତି ସରୁନି ରତି
ଯେମିତି ମାଟିରୁ ଆକାଶ ଯାଏ
ଫାଙ୍କା ହୋଇ ଉଠୁଛି ରାତିର ଶେଷ ଯାମରେ ।

ଜରୁରୀ କାମକୁ ବାତିଲ କରି
ଚିହ୍ନାଲୋକ ସବୁ ଅରଣ୍ୟକୁ
ଚାଲିଗଲେଣି
ବନ୍ୟା ପାଣିରେ ଧୋଇ ହୋଇ ଗଲାଣି
ବିଲବାଡି ଗାଁ ଦାଣ୍ଡ
ଚଢେଇ ହୁରୁଡେଇବା ବନ୍ଦ ହେଲାଣି
ଧାନ କ୍ଷେତରେ
ତୁଳସୀ ମୂଳରେ ପାଣିଦେବା
ବନ୍ଦ ହେଲାଣି ନୂଆ ବୋହୁର ।

ମେଘଠୁ ବଡ ଚାନ୍ଦୁଆ କଣଯେ
ପିପିଲିରେ ଗଢା ହୋଇନି
କାଞ୍ଚନିକ ସୁଖରେ ବଂଚିଛି ଜୀବନ
ପ୍ରେମିକା ତାରିଖ ବଦଳଉଛି ମିଳନର
ଛଦ୍ମବେଶରେ ନାଗର ଆସିଛି
ସାପକୁ ଶିଡିକରି
ବଢି ପାଣିରେ ଯେମିତି ଓହ୍ଲାଇଛି ଜହ୍ନ
ମାତବରିଆ କିଛିଲୋକ ମେଲଣ ପଡିଆରେ
ମସ୍‌ଗୁଲ ସମୂହ ରାସରେ
ଯେମିତି ଷୋଡଶୀ ମନ
ଯେମିତି ଛିଟ କନାର ଓଢଣୀ
ଯେମିତି ଚନ୍ଦ୍ରଉଦିଆ ଚନ୍ଦ୍ରଭାନୁ

ଯେମିତି କିଳାପୋତିଆ ଧନ
ଯେମିତି ଗାଁ ସ୍କୁଲରେ ଡାକ ନାଁ
ଯେମିତି ପୋଖରୀ ଭିତର କଇଁ
ଯେମିତି ତୁମେ ସମୟ ମାଗିଛ
କେବେ ଆସିବା ପାଇଁ ।

କିଛି ଛାଇ ଚାଲିଅଛନ୍ତି
ପେରେଡରେ
କିଛିରାତି ଉଜାଗର ଅଛନ୍ତି
ଅବିଶ୍ୱାସର ଚାଦର ଘୋଡି
ଘୃଣାର ଅରଣ୍ୟରେ ଡେଇଁଛି ବିଲୁଆ
ନା ସେ ଜାଣିଛି ତମ ନାଁ
ନା ମୋ ନାଁ ।

ପିଲାଦିନ ପରି ପ୍ରେମ
କିଛି ମନେନାହିଁ ନା ଦିନ ନା ରାତି
ସ୍ମୃତି ସବୁକୁ ଫେଂଟି
ମୁଁ କୋଣାର୍କ ଗଢୁଛି ।
□□

# ତୃତୀୟ ପାଦ

ଯାତ୍ରାରେ ନାରୀଟିଏ
ଅସରନ୍ତି ପଥ ଓ ପୃଥିବୀ
ଆରପାଖେ ଠିଆ ଗଛ ଓ ପକ୍ଷୀ
ଇର୍ଷାରେ ମୁଁ ଜଳୁଥିଲି
ମନେମନେ କିଶୋରୀ ପ୍ରେମରେ
ଆକାଶରେ ଜହ୍ନ ପୁଣି ପୃଥିବୀରେ ଜହ୍ନ
ଭଲ ପାଉଥିଲି ସମସ୍ତଙ୍କୁ
ଆଉଁସି ଦେଉଥିଲି ଗୁଣ୍ଡୁଚିର ପିଠି ଆହ୍ଲାଦରେ
ସବୁ ଯନ୍ତ୍ରଣା ସବୁ ଦୁଃଖ ପାଲଟି ଯାଉଥିଲା
ସ୍ନେହ ଓ ପ୍ରେମ, ଆକାଶର
ସବୁ ପ୍ରତାରଣା ସବୁ କାନ୍ଦଣା
ପଟି ବାନ୍ଧି ଦେଉଥିଲା ସମୟ କ୍ଷତର, ପୃଥିବୀର !

ଲାଲଗୋଲାପ ପରି ହସୁଥିଲା
ନିରର୍ଥକ ପ୍ରେମ, ବଢିଲା ଝିଅ
ହାତ ବଢାଉଥିଲା ମୋ ଆଡକୁ
ସମୁଦ୍ର ଅନନ୍ତ ଦୂର ଏବଂ ଆନ୍ଦୋଳିତ ଜାଣି
ଶବ୍ଦ ସବୁ କଚାଡି ପଡୁଥିଲେ
ଶ୍ୟାମା ପକ୍ଷୀ ଡାକୁଥିଲା ସାଥିକୁ ବାଉଁଶ ବଣରେ
ମୁଁ ଦେଖିଲି ମୌନ ଜଙ୍ଗଲ ପ୍ରତିଧ୍ୱନି ତୋଳୁଥିଲା

## ।। ସମୟ କୁହେନା କିଛି ।।

ଅସହ୍ୟ ଉତ୍ତାପରେ ଫୁଟୁଥିଲା
ନଦୀ, ଆଞ୍ଜୁଳା ଆଞ୍ଜୁଳା ଫୁଲ
ବିଛାଡି ପଡୁଥିଲା ପାଣିରେ କବିତା ପରି ।

ଅସ୍ୱାଭାବିକ ଭାବେ ଶବ୍ଦ ପୁଞ୍ଜ
ବିଲୀନ ହୋଇଗଲେ
ନୂଆ ଅର୍ଥ ତିଆରି କଲେ
ନୂଆ ଉତ୍ତାପ ଦେଲେ
ନୂଆ ଟୀକାରେ କବିତାର ଜାତକ ଗଢିଲେ ।

ସମୁଦ୍ର କୂଳରେ ନଙ୍ଗର ପକାଇଥିଲା
ସାଧବ ବୋଇତ
ସୁନା ଅଳଙ୍କାର ବୋଝେଇ
ଲବଙ୍ଗ ଦ୍ୱୀପର ବାସ୍ନାରେ ବିଭୋର
ଦୂର ଦିଗ୍‌ବଳୟ ରାଗରେ ଗୁମ୍‌ସୁମ୍
ନାରୀଟିଏ ଚିତ୍କାର କଲା
ମୋତେ ପଥ ଦେ'
ମୋତେ କ୍ଳାନ୍ତି ଦେ'
ମୋତେ ଯନ୍ତ୍ରଣା ଦେ'
ମୁଁ ଅସରନ୍ତି ଯାତ୍ରାରେ ।

ସୂର୍ଯ୍ୟାଲୋକ ପଡିଥିଲା ବାଟ ଅଗଣାରେ
ଫୁଲ ବିଛାଡି ପଡିଥିଲା ବେଳାଭୂମିରେ
ପବନ ବାଉଳା ଥିଲା ପ୍ରେମରେ
ନାରୀଟିଏ ଉନ୍ମତ୍ତ ଚିତ୍କାର କରୁଥିଲା ପୁରାଣ ସ୍ୱରରେ,
କୁଲେଇ ଦେ' ରୂପାର ସୁନାର
ଖୋଜିଦେ ଛେଳି ଚରାଳିର ସ୍ୱପ୍ନ
ଗଢିଦେ ନବତଳ ପ୍ରାସାଦ
ଦେ' ଦେ' ଦେ' ଆକାଶ ଦେ'
ମୁଁ ବାମନର ତୃତୀୟ ପାଦ ।
□□

# ଧାରେ ଚାହାଁଣୀ

ନଈ ଦେଖିଲେ ମନେପଡ଼େ
ଇତିହାସ
ନାରୀ ଦେଖିଲେ ମନେପଡେ
ସଭ୍ୟତାର ହସ ।

ଜୀବନର ସବୁ ରସ ସବୁ ମହୁ
ଚିପୁଡ଼ି ଗଢ଼ିଦିଏ ବସାଟିଏ
ପକ୍ଷୀପରି ପ୍ରେମ ।

କୁଆଁରୀ ହାତରୁ ତିଆରି
ବାଦ୍ୟପରି ସମ୍ମୋହନ କରେ
ଜଙ୍ଗଲର କୁରେଇଁ ଫୁଲ
ଚଂପା ଫୁଲ ସବୁକୁ ।

ଜଙ୍ଗଲର ଜନ୍ତୁ ସବୁଙ୍କ ତନ୍ଦ୍ରା ଭାଙ୍ଗିଦିଏ ପ୍ରେମ
ଯୋଡି ଯୋଡି ଖେଦି ଯାଆନ୍ତି
ସେମାନେ ଦିଗନ୍ତ ଆଡେ
ନୂଆ ସୃଷ୍ଟିର ନିଶାରେ
ମୟୂର ନାଚୁଥାଏ ତ
ଖସି ଆସେ ନାଚୁଣୀ ମେଘ
ହରିଣୀ ଦେଖୁଥାଏ ତ
କନ କନ ହୁଏ ପବନ ।

## ।। ସମୟ କୁହେନା କିଛି ।।

ସେମିତି ହାତ ପାଖରେ ଥାଏ
ପ୍ରେମ ଅଥଚ ଅପହଞ୍ଚ
ସେମିତି ନିଜ ପାଖରେ ଥାଏ ଜୀବନ
ଅଥଚ ଛୁଇଁ ହୁଏନା କେବେବି
ଜଙ୍ଗଲ ଉତ୍ତର ଦିଏ
ନ ପଚାରିଲେବି ପ୍ରଶ୍ନ ଶୁଣ,
ଅନ୍ଧାରକୁ ଚିରି ଫୁଟିଉଠେ ଯେଉଁ ଆଲୋକ
ତାକୁ ଛୁଇଁବା କଷ୍ଟକର
ଅନୁଭବିବା ଖୁବ୍ ସହଜ
ଧାରେ ବିଜୁଳୀ ପରି ଲେଖିଦିଏ କବିତା
ଜୀବନ ପରି ଶୂନ୍ୟତା ମାଟି ପରି ନୀରବତା ।

ନଦୀ ଦେଖିଲେ ମନ ହୁଏ ବୋହିଯିବାକୁ
ପାହାଡରୁ ପାହାଡ
ଜୀବନରୁ ନିର୍ବାଣ
ନାରୀ ଦେଖିଲେ ମନ ହୁଏ ଗପିବାକୁ
ଆକାଶରୁ ଆକାଶ
ଜୀବନର ନୀଳ ସମ୍ମୋହନ ।

ନଦୀ କିଏ ବୋଲି ପଚାରିଲେ
ମୁଁ ଦେଖାଏ ଜୀବନ
ନାରୀ କିଏ ବୋଲି ପଚାରିଲେ
ଦେଖେଇଦିଏ ଯନ୍ତ୍ରଣାର ଅପରୂପ କାରୀଗର
ଯାହା ହରଦମ କଟି ଯାଉଥାଏ
ସମୟର ତରବାରୀ ଦାଢରେ
ଲେଖୁଥାଏ ନୂଆ ଏକ ଇତିହାସ
ସବୁ ରକ୍ତ ନିଗାଡି ଦିଶୁଥାଏ ହସ ହସ ।

ନଦୀ ଉଜ୍ଜଳ ଧାରେ କଜଳ
ନାରୀ ଧାରେ ଚାହାଣୀ
ତୀକ୍ଷ୍ଣ ଓ ଲହୁ ଲୁହାଣ ।
□□

# ଅଂଶୁପା

ତୁମେ ଆକାଶକୁ ଅନେଇ ଥାଅ
ତଲ୍ଲୀନ
ମୁଁ ତୁମର ନୀଳ ନୀରବିତ
ହୃଦୟର ବଶଂବଦ ।

ପାଦତଳେ ମାଟିକୁ ପରଖୁଥାଏ
ବୈଜ୍ଞାନିକ
ଆକାଶର ବ୍ୟାପ୍ତିକୁ
ସନ୍ନ୍ୟାସୀ ।

ନକ୍ଷତ୍ରମାନେ ଫୁଲ ହୋଇ
ଫୁଟନ୍ତି
ପକ୍ଷୀମାନଙ୍କ ସହିତ ବସନ୍ତି
ମଇତ୍ର
ଭବିଷ୍ୟତର ସବୁ ଯୋଜନା
ଝାପ୍‌ସା ଦିଶୁଥିବା ଅତୀତ ଠାରୁ
ଦିଶନ୍ତି ନିସ୍ତ୍ରାଣ;
ବର୍ତ୍ତମାନର ସ୍ୱପ୍ନ, ପ୍ରେମ ଓ ଅଭୀପ୍ସା
ଅତୀତର ନକ୍ସାଙ୍କନରେ ଖୁବ୍ ଉଜ୍ଜ୍ୱଳ
ଜଙ୍ଗଲ ଜଳ ଓ ଜମିର ସରହଦ ଭିତରେ
ବନ୍ଦୀ ଶବ୍ଦ ବହୁଥାଏ ନଦୀ ପରି

## ।। ସମୟ କୁହେନା କିଛି ।।

ଦିଗନ୍ତ ପରେ ଦିଗନ୍ତକୁ ଛୁଇଁ
ଗୋଟିଏ ପରେ ଗୋଟିଏ ଉପନଦୀକୁ
ଗୋଟିଏ ପରେ ଗୋଟିଏ ଶାଖାନଦୀକୁ
ସାଉଁଟି ବିସ୍ତାରି ଲେଖୁଥିବି ଇତିହାସ
ଯାହା କବିତା ପାଲଟୁଥାଏ
ପାଲଟୁଥାଏ ଅମୃତ ଅକ୍ଷର ।

ତମେ ଧିରେଧିରେ ଆକାଶ ପାଲଟି ଯାଅ ।
ନାଭିନାଡ କଟା ସରିଗଲାପରେ
କିଏ ନଦୀ କିଏ ନାରୀ
ତମେ ଯେମିତି ସଂପୂର୍ଣ୍ଣ ଯୌବନ
ଛଳଛଳ ପରିପୂର୍ଣ୍ଣ ।

ରଙ୍ଗାର କଂସା କବାଟର ଧ୍ୱନି
ଶୁକଦେଇଙ୍କ ଅବୁଝା ଅଶ୍ୱ
ଗୋବିନ୍ଦ ରଥଙ୍କ ବର୍ଣ୍ଣବୋଧକ
ଛମାଣଆଠଗୁଣ୍ଠର ଋଣ ସୁଝୁଥାଏ
ଚର୍ଚ୍ଚିକା ମହିମା ଦେବ ଏକ ସମୟରେ
ପାରିଧିରେ ବାହାରନ୍ତି
ସରଂଡା ଜଙ୍ଗଲର ହରିଣୀ ସବୁ
ଜ୍ୟୋସ୍ନା ପାଲଟି ସାରିଲା ପରେ
ବୁଦ୍ଧ ଓ ଈଶ୍ୱର ଏକାପରି ଦିଶନ୍ତି
ତପସ୍ୟାରେ
ନିରଂଜନା ହେଉ ବା  ମହାନଦୀ ହେଉ ।

ଅଂଶ ଅଂଶ ସ୍ୱପ୍ନ ଛିଂଡୁଥାଏ
ଗୋଟିଏ ଗୋଟିଏ ଶବ୍ଦ ନିଗୁଡୁଥାଏ
ନଈରୁ ପାହାଡ ଯାଏ ପଡିଥାଏ
ଜ୍ୟୋସ୍ନାର ପଥ
ଜଳରୁ ଜଙ୍ଗଲ ଯାଏ  ମହମହ
ପଦ୍ମବନ

ସ୍ୱପ୍ନଟିଏ ରୂପାନ୍ତରିତ ହୁଏ ବାସ୍ତବରେ
ଶବ୍ଦଟିଏ କବିତାରେ
ରଶ୍ମିଟିଏ ସିଦ୍ଧାର୍ଥ୍ୟରେ
ଧାରେ ଜ୍ୟୋତ୍ସ୍ନାରେ ଗଢିଉଠେ
ଚଳମାନ କୃପା
ଗଛ ପରି ଜହ୍ନ ପରି ମାଟି ପରି
ମା' ପରି ଅବଗୁଣ୍ଠନବତୀ
ସଂପୂର୍ଣ୍ଣ ଯୌବନା
ଅଂଶୁପା ! ଅଂଶୁପା !।

ΟΟ

# ଶବ୍ଦର ତରଙ୍ଗ

କାହାଣୀଟେ ଗଢିଲେ
ଚିଲିକା ହୁଏ
କୋଟିକୋଟି ଧୀବରଙ୍କ
ପେଟପାଟଣାର ସତରଂଞ୍ଚ
ବେଳେବେଳେ ସ୍ୱପ୍ନ ପରି ଆସନ୍ତି
କାଳିଜାଈ ତ ଜଗନ୍ନାଥ
ପାତାଳି ହେଲାପରେ
ଝଟକି ଉଠେ ଦେବତା
ତକିଖାଁର ଆକ୍ରମଣରୁ
କଳାପାହାଡ ଯାଏ
ଝିଅ ବିଦାର କରୁଣ କାହାଣୀ
ପ୍ରତିଟି ଲହଡି ବଖାଣେ
ଦିଗନ୍ତର ଲୁହରେ
ଲୁଣିଆ ହୁଏ ଜଳରାଶି ।

ଚିଲିକା କେବଳ କାହାଣୀଟିଏ ନୁହେଁ
ଚିଲିକା କେବଳ ଜଳ ଓ ସ୍ଥଳର
ସଂଗମ ନୁହେଁ
ବରଂ ପକ୍ଷୀ ପରି ସ୍ୱାଧୀନ
ଆକାଶମଗ୍ନ

## ।। ସମୟ କୁହେନା କିଛି ।।

ମେଦିନୀ ଦୃଷ୍ଟିରେ ଦେଖୁଥାଏ
ଦୁଃଖ ଜଂଜାଳ ଓ ହତାଶାକୁ ।

ନରି ରାଉତର ପାଲଟଣା ଡଙ୍ଗା
ବୁଲୁ ମାନସିଂର ମୋଟର ଲଂଚ୍
କରାଳ ହରିଚନ୍ଦନର ଜାହାଜ
ଖେଦିଯାଏ ଚିଲିକାର ନୀଳନୀଳ ଲହଡିରେ
ତାର ପ୍ରତିଟି ଅଙ୍ଗକୁ ଛିନ୍‌ଭିନ୍ କରି
ଜାଲଟାଣେ ରୁଦ୍ଧକରେ ପଥ
ଟାଣିନିଏ କୁଢ କୁଢ ମାଛ ।

ମାଛରଙ୍କା ଅନାଇଥାଏ ଦିନସାରା
ଗୋଟିଏ ମାଛକୁ ଚଂଚୁରେ ଧରି
ଦିଗନ୍ତକୁ ପ୍ରସାରେ ଡେଣା
ମଣିଷ ଗୋଟିଏରେ ସନ୍ତୁଷ୍ଟ ନୁହେଁ
କୋଟିଏ ତାର ପାଉଣା
ଚିଲିକାର ବକ୍ଷ ବିଦାରି
ଉତ୍ତୋଳିତ କରେ ରତ୍ନ
ସଭ୍ୟତାର ଯୁଗ ଯୁଗର
ଇଲିଶି,ଚିଙ୍ଗୁଡି, କଙ୍କଡା
ଶୋଭାର ଭଣ୍ଡାର ।

ନୀଳାମ୍ବୁ ଚିଲିକା
କାହାଣୀ ଭିତର କାହାଣୀଟିଏ
ତରଙ୍ଗ ଭିତର ଅନ୍ତରଙ୍ଗ ତରଙ୍ଗଟିଏ
ଯିଏ ମରମକୁ ଭେଦେ
ହାହାକାର ପରି ।

କାହାଣୀଟେ ଗଢିଲେ
ଚିଲିକା ହୁଏନା
ବରଂ ଚିଲିକା ହିଁ କାହାଣୀ

ଆଦ୍ରଭୂମିର ପାଟରାଣୀ
ଚିଲିକା ପକ୍ଷୀର ଭୂସ୍ୱର୍ଗ
କିମ୍ବଦନ୍ତୀର ଗନ୍ତାଘର
ଜହ୍ନରାତିର ସ୍ୱପ୍ନ
ମୁଖରିତ କବିର ଶବ୍ଦ
ନାୟିକାର କୃଷ୍ଣକବରୀ ପରି ଗଭୀର ଅର୍ଥମୟ
ଚିଲିକା ପକ୍ଷୀର କାକଳୀ ପରି ପ୍ରେମମୟ
ଧାରେ ଶାଗୁଆ ବିଶ୍ୱାସ
ଜଳଜ ପ୍ରାଣୀଙ୍କ ଉଦାରପଣ
ସୁସ୍ଥ ଜିଜ୍ଞାସାର କୁଶବିଦ୍ଧ ପରିଣୟ ।

ଚିଲିକା ନିଦରେ ଥାଏ ସ୍ୱପ୍ନରେ ଥାଏ
ବାରମ୍ବାର ଫେରେ ପ୍ରଣୟ ରଚି
ସମୁଦ୍ର ସହ ଆକାଶ ସହ
ସନ୍ଥପରି ଆତ୍ମମଗ୍ନ
ରାତି ଓ ଦିନ ପରି ମିଳନମନସ୍କ
ଛାୟାଯୁଦ୍ଧ ପରି କୋଳାହଳ
ପ୍ରେମିକାର ଚୁମ୍ବନ ପରି ଛଳନାହୀନ ସଂବେଦନ ।

ଢେଉ ପରି ମାଡିଆସେ ପ୍ରେମ ଚାରିପଟୁ
ଲୁଣି ହାଓ୍ୱାପରି ଚରିଯାଏ ଆତ୍ମାରେ
ଅସଂଖ୍ୟ ଇଚ୍ଛା ବୁଡ ଦିଅନ୍ତି ପାଣିକୁଆ ପରି
ଗେଣ୍ଡାଳିଆ ଚକ୍କର କାଟେ ନୀଳ ସୀମାନ୍ତରେ
ସୁଖର କୁଟୀରଟିଏ ଗଢିଉଠେ
ସୂର୍ଯ୍ୟାଲୋକରେ ଚିଲିକାର ନୀଳ ଜଳରେ ।

କିମ୍ବଦନ୍ତୀ ସବୁ ଲୀନ ହୁଅନ୍ତି
ଢେଉପରି ପାହାଡରେ
ଚିଲିକା ଶବ୍ଦର ତରଙ୍ଗ ଭାଙ୍ଗି
ସ୍ୱଚ୍ଛ ଓ ସୁନ୍ଦର କବିତାଟିଏ ପାଲଟୁଥାଏ ।
□□

# ଚିଲିକାର ଏଇ ନୀଳହ୍ରଦ

ଚିଲିକାର ଏଇ ନୀଳହ୍ରଦକୁ
ମୁଁ ଚଲୁ କରେ
ପାହାଡର ଛାତି ଉପରେ
ଫୁଟି ଉଠୁଥାଏ
ଶହ ଶହ କୁରେଇଁ ଫୁଲ
ନାସୀ ତଳେ ବନ୍ଧା ହୋଇଥାଏ
ଲଗାଲଗି ନୌକା
କଳା ଘୁମ ପାଣିରେ ଖେଳୁଥାନ୍ତି
ପକ୍ଷୀ ଓ ମୀନ
ଡଲଫିନଟିଏ ଲମ୍ଫଦେଇ
ଚକ୍ରାକାରରେ ଫେରେ ପାଣିକୁ
ଚାହିଁଥାଏ ଚିଲିକାକୁ ।

କେତେ ଉଦ୍ଭଟ କିଂବଦନ୍ତୀର ଝିଅଟିଏ
ଚଉଠି ଦୀପ ଜଳିବା ପୂର୍ବରୁ
ଜୀବନ ଦୀପ ନିର୍ବାପିତ ହୁଏ
ଜୀବନ ଗଢ଼ି ପାରେନା
ମନ୍ଦିର ଗଢ଼ାଯାଏ,
ଜଳଜଞ୍ଜାଳର ମତ୍ସ୍ୟକନ୍ୟାଟିଏ
ପ୍ରେମରେ ଦହଗଞ୍ଜ ହୁଏ
ପାଣି ଖେଳ ଛାଡି

## ।। ସମୟ କୁହେନା କିଛି ।।

ଯୁଦ୍ଧର ନିୟତି ସାଜେ
କାଳଚକ୍ରଯାନର ଅଗ୍ନିକନ୍ୟା
ସମ୍ରାଟର ଭାଗ୍ୟରେଖା ଟାଣେ ।

ଚିଲିକାର କୂଳେ କୂଳେ ଅଥୟ
ତୃଷାର୍ତ୍ତ ପ୍ରାଣକୁ
ସନ୍ଧାନ କରୁଥାଏ ଦେଶ ବାହାର ପକ୍ଷୀ
ମୁଦି ପିନ୍ଧା ପ୍ରେମିକା ଖୋଜୁଥାଏ
ନୀଡ
ଏଇଟିକେ ଆଗରେ ସୂର୍ଯ୍ୟ
ଏଇଟିକେ ପଛରେ ଜହ୍ନ
ମାଛ ଜାଲ ଭିତରୁ ଡଂହୁକି ଉଠେ
ଫମ୍ପା ସ୍ୱପ୍ନ
ପିଲା ଖେଳର ବାଲି
ଦୁଃଖ ସୁଖର ସରହଦ
ପାଲଟି ଯାଏ ନୂଆ ଜୀବନର
ଦସ୍ତାବେଜ
ପ୍ରେମର ଅଭୟାରଣ୍ୟ ।

ପକ୍ଷୀ ଡାକୁଥାଏ ପକ୍ଷିଣୀକୁ
ସାରସ ଚକ୍କର କାଟେ ଆକାଶରେ
ପାହାଡ ସେପଟ ଦେବୀ
କୁହାଟୁଥାଏ ବାରହାତ ଖଣ୍ଡା ଧରି
ମୋଗଲଗୋଳରେ
ଗୁପ୍ତ ଅଭିସାର ରଚନ୍ତି ଜଗନ୍ନାଥ ।

ତଥାପି ବି
କିଂବଦନ୍ତୀର ଶ୍ରମଣଟିଏ
ଏକା ଏକା ଚାଲୁଥାଏ
ଦୁଃଖର ଗଜଲ ଗାଇ ମତ୍ସ୍ୟକନ୍ୟା
ରୂପାନ୍ତରିତ ହୁଏ ମହାରାଣୀରେ

|| ସମୟ କୁହେନା କିଛି ||

ଝିଅଟିଏ ଶାଶୁଘରକୁ ଯିବା ବାଟରେ
ପାଲଟୁଥାଏ ଦେବୀ
ଦୀପର ସମସ୍ତ ଲୋକଙ୍କ
ସୁରକ୍ଷା ପାଇଁ ।

କିଛି ଶବ୍ଦ
କିଛି ଆଶା
କଅଁଳୁଥାଏ ଥୁଂଟା ଗଛରେ
ଚିଲିକା ସେମିତି ଥାଏ ଆନମନା
ଜ୍ଞାନର ଦୀପ ଶିଖାଟିଏ
ଦିକି ଦିକି ଜଳୁଥାଏ
ନୀଳ ଜଳ ମଧ୍ୟରେ
ଚକ୍ରବାଳକୁ ଉହାଡ କରି
ଜୀବନକୁ ଚିର ହରିତ କରିବାକୁ
ଚିଲିକାର ଏଇ ନୀଳ ଜଳ
ଚଳୁକରେ ସବୁ ଇତିହାସକୁ ।
□□

## ପକ୍ଷୀର ଗୀତ

ମୁଁ ଫୁଲ ତୋଳିନି
ତମ ବଗିଚାର
ମୁଁ ପ୍ରେମ କରିନି
ତମକୁ, କାହାକୁ କେବେବି !

ଜହ୍ନ ଡାକିଲେ ନିଶବ୍ଦ ରାତିରେ
ମୁଁ ଶୁଣିଛି
ଗଛ ଭାଙ୍ଗିଲେ ଚଡକ ମାଡରେ
ମୁଁ ଚେଇଁଛି
ପକ୍ଷୀର ଥଣ୍ଟରେ ବେଳେ ବେଳେ
ଶବ୍‌ଦ ଉଠାଇ ଥୋଇଛି
ନିର୍ଦ୍ଦିଷ୍ଟ ସ୍ଥାନ ପାଇନି
ଏଠି ସେଠି ସବୁଠି ସାଇତିଛି
ଶାବକ ଜନ୍ମିଲାବେଳକୁ
ସବୁଠି ବସା ହସୁଛି ।

ଭଙ୍ଗା ଗଛ ପୁଣି କଅଁଳିଲା
ବେଳକୁ
ଜହ୍ନ ଡାକୁଛି କଣ -
ଶୋଇ ପଡିଲୁକି, ଚମକୁଛୁ ଥରକୁ ଥର
ସବୁଥର ପରି ?

|| ସମୟ କୁହେନା କିଛି ||

ମୁଁ ଭିତରେ ଭିତରେ
ସ୍ୱପ୍ନ ଦେଖୁଛି
ସବୁଜ ଅରଣ୍ୟର
ସମୁଦ୍ରର ଲହଡିକୁ
ରଙ୍ଗଉଛି ଜହ୍ନର ହସରେ ।

ଅନନ୍ତକାଳର ଶବ୍‌ଦଟିଏ
ଫୁଲ ହୋଇ ଫୁଟିଛି
ତମ ବଗିଚାରେ
ମୁଁ ତୋଳିନି
ତୋଳିବାର ସ୍ପର୍ଦ୍ଧା ବି କରିନି
ହେଇ ସୃଜନୀର
ପ୍ରଣବ ଓଁକାର ପରି
ଆକାଶର ସ୍ୱପ୍ନ ପରି
ପକ୍ଷୀର ଗୀତ ଶୁଭୁଛି ।
▢▢

## ଶୂନ୍ୟ ଭ୍ରମଣ

ସମୁଦ୍ର ନିଜର ନୁହେଁ
ଅରଣ୍ୟ ବି;
ସ୍ୱପ୍ନ ଗଳୁରିବା ମାନେ
ସମୁଦ୍ର ହେବା
ଅରଣ୍ୟ ହେବା ।

ସ୍ୱପ୍ନମାନେ ଶୂନ୍ୟରେ ପହଁରିବା
ଆହ୍ଲାଦରେ ଆକାଶକୁ ଛୁଇଁବା
ଆବେଗରେ
ଅନୁରାଗରେ
ଭୟରେ
ଆତଙ୍କରେ
ସମୁଦ୍ର ପାଲଟିବା
ଅରଣ୍ୟ ବି ।

ଗୋଟେ ଅନ୍ତରଙ୍ଗ ପ୍ରେମ କବିତା
ପରି ସ୍ୱପ୍ନ
ଗୋଟେ ଛଳନାହୀନ ଜିଗୀଷା ଭିତରେ
ମୁହ୍ୟମାନତା ହିଁ ସ୍ୱପ୍ନ
ଉଡିବା ବୁଡିବା ସବୁ ସମାନ
ସବୁ ଏକା କଥା

ଯନ୍ତଣାର ଅନ୍ୟ ନାମ ସମୁଦ୍ର
ବେଦନାର ପୁଞ୍ଜିଭୂତ ଶିରୋନାମା ଅରଣ୍ୟ
ଘନଘୋର ମନର ପଞ୍ଜୁରୀରେ
ଭୂମିଷ୍ଠ ହେବା
ମେଦିନୀ ମନସ୍କ ହେବା ଅରଣ୍ୟର
ବାସ୍ତବତା ।

କଞ୍ଚା ଅନୁଭବ ସବୁ
ଆକାଶ ମୁହାଁ,
ସ୍ମୃତି ସବୁ ଐତିହାସିକ ଦଲିଲ
ଭୂମିକୁ ଭୂମାରେ ପରିଣତ
କରିବାର ପ୍ରବଣତା
ଧିରେ ଧିରେ ଶିଳାଲିପି
ପାଲଟେ
ଛାତିରେ ଲେଖିଦିଏ
ଅଲିଭା ଅକ୍ଷର
ଭ୍ରମ ଭିତରେ ଭ୍ରମରେ
ଭ୍ରମର ପରି ଅନୁରଣନ
ସ୍ୱପ୍ନର ଡେଣା ଗଜୁରିବା
ହିଁ ଇତିହାସ ।

ପଥଭ୍ରାନ୍ତ ପଥିକମାନେ
ଯେଉଁ ଆସ୍ପର୍ଦ୍ଧାରେ
ଶିଳାଲିପିର ପାଠୋଦ୍ଧାର
କରନ୍ତି ତାହା
ପ୍ରହେଳିକାମୟ
ସନ୍ଦିଗ୍ଧ ଓ ଶୂନ୍ୟ ଭ୍ରମଣ ।
ନିଜର ନୁହେଁ
କେବେବି ସମୁଦ୍ର ବା ଅରଣ୍ୟ ।
□□

# ଗଛର ସ୍ତୁତିଗାନ

ଗଛ ମଣିଷ ପରି ଚିନ୍ତା କରେ କି
ଖାଇବା ପିଇବାର ଅଦଉତି
ଭୋକିଲା ପେଟର ଯନ୍ତ୍ରଣା
ପିଲା କବିଲାଙ୍କ କଷ୍ଟ
ଡାଆଣି ଚିର୍ଗୁଣିଙ୍କ ଭୟ ପରିବାରର ଦହଗଞ୍ଜ ।

କିଏ ଅନୁଭବିଛି ଗଛର ମନସ୍ତତ୍ତ୍ୱ
ତାର କଥୋପକଥନ ନୀତିକଥା ପରି
ତା'ର ଗମନାଗମନ ଆଈମା କାହାଣୀରେ
ଏପରି ଗଛ ରାତି ପାହିଲା ବେଳକୁ
ଆଉ ପାରିରେ ?

ଗଛ ବିମାନ ପରି ଉଡିପାରେ
ଜାହାଜ ପରି ବୁଡିପାରେ
ଘୋଡା ପରି ଡିଏଁ
ସାପ ପରି ପେଟେଇ ଚାଲେ
ତ ସମସ୍ତେ କାକୁସ୍ତ ଭୟରେ
ଗଛର ସ୍ତୁତି ଗାନରେ ।

ମୁଁ ବି ଗଛକୁ ପୁଅ ପରି ପ୍ରେମିକା ପରି
ଈଶ୍ୱର ପରି ସ୍ନେହକରି ଭଲପାଇ
ସ୍ତୁତିଗାନ କଲି,

## ।। ସମୟ କୁହେନା କିଛି ।।

ମୋ ପଛକୁ ପଛ ମଣିଷର ଧାଡି
ମଣିଷ ପଛକୁ ପଛ ପଶୁପକ୍ଷୀ
ପଶୁପକ୍ଷୀଙ୍କ ପଛକୁ ଅଣୁଜୀବ, ପରଜୀବି
ଓ ଅଦୃଶ୍ୟ ଜୀବଜଗତ
ସମସ୍ତେ ଯୋଡହସ୍ତ
ସମସ୍ତେ ଭୟତ୍ରସ୍ତ ।

ଗଛମାନେ ସୃଷ୍ଟି ଆରମ୍ଭରୁ
ସ୍ତୁତିଗାନରେ ନିମଗ୍ନଥିଲେ
ଆକାଶକୁ ମୁଣ୍ଡ ଦେଖାଇ
ମାଟିରେ ପୋତି ଦେଇଥିଲେ ପାଦ
ଯେତେ ଜ୍ୱାଳା ଯନ୍ତ୍ରଣା ଲାଭାର ଉତ୍ତାପକୁ
ଖାତିର ନକରି ହସହସ
ଯେମିତି ଏ ସୃଷ୍ଟିକୁ ଉଦ୍ଧାର କରିବେ
ପରିତ୍ରାଣ କରିବେ ତ୍ରାଣକର୍ତ୍ତା ଭାବରେ ।

ଧ୍ୱଂସର ପ୍ଲାବନ ଭିତରେ
ଦିଶୁଥିବ ତାଙ୍କର ଯୋଡହସ୍ତ
ସବୁଜ ଶିଖର ଉପରେ ଉଡୁଥିବ
ଶାନ୍ତିର ଚିରାଳ, ଶଂଖଚିଲ
ଧାଡିଧାଡି ଧ୍ୱଂସସ୍ତୁପ ଉପରେ
ପୋତି ଦେଉଥିବ ଗୋଟିଏ ଗୋଟିଏ ବୀଜ
ମହାକାଳର ଇତିହାସ
ଗଜୁରି ଉଠୁଥିବ ଅଗ୍ନ୍ୟୁତ୍ପାତରୁ
ବରଫପାତର ଘନଘୋର ବତାସରୁ
ମାଟିର ବୁକୁ ଥରାଇ ତ୍ରାଣକର୍ତ୍ତାର ଶୈଶବ ।

ସୃଷ୍ଟିର ମିଳିତ କୋରସ
ଥିବ ଇଥରରେ
ଦିଗନ୍ତର ପଲ୍ଲବନରେ ଶିହରି ଉଠିବ ଜୀବଜଗତ ।

ମହାତ୍ମାମାନେ ବରି ନେଉଥିବେ
ବନବାସ
ପୁଣିଥରେ ପୃଥିବୀ ଘୋଷୁଥିବ
ସୃଷ୍ଟିର ବ୍ୟାକରଣ ପକ୍ଷୀର ଚଂଚୁରେ
ଗଛମାନେ ଥିବେ ହସ ହସ
ପଲ୍ଲବି ଉଠିବ ମାଟି ସ୍ପନ୍ଦିତ ହେବ
ଆକାଶ
ଗଛର ସ୍ତୁତି ଗାନରେ ।
□□

# କେଉଁ ରାଇଜରୁ ଆସିଚ

ସମୁଦ୍ର ଗର୍ଭରୁ ମତ୍ସ୍ୟକନ୍ୟା
ହୋଇ ଆସିଚ ତମେ
କୁଞ୍ଜକୁଞ୍ଜ ତମାଳ ଫୁଲରେ
ସଜାଇଚ ବେଶ
ଶଂଖନାଭି କ୍ଷେତ୍ରରେ
ଅଭିସାର ରଚିଛ
ପରୀ ହୋଇ
ଆହ୍ଲାଦର ପଦ୍ମପୋଖରୀରେ ।

ମଧୁର ମଧୁର ସ୍ମୃତିର
ପାହାଚ ଚଢ଼ି
ରୋମାଞ୍ଚ ରୋମାଞ୍ଚ ସ୍ୱପ୍ନର
ସ୍ତରକୁ ଭେଦି
ବିଶ୍ୱାମିତ୍ରର ତପକୁ ଭାଙ୍ଗିଚ
କେଉଁ ରାଇଜରୁ ଆସିଚ ।

ତମ ଆଗମନରେ
ପାହାଡ଼ରେ ଫୁଟିଚି ପଦ୍ମ
ଜଙ୍ଗଲରେ ସବୁଜ ତରଙ୍ଗ
ହରିଣୀର ଆଖିରେ ଚମକ
ପୃଥିବୀରେ ହସର କୁହୁକ

ସନ୍ତାପିତ ହୃଦୟର ନିଳୟରେ
ପ୍ରେମର ରଙ୍ଗ
କ୍ଷତସାରା ଗୁଗୁଗୁଗୁ
ଆହ୍ଲାଦ ଯନ୍ତ୍ରଣା
ଯୌବନର ଭୂମିକମ୍ପ
ଭାଙ୍ଗିଯାଉଚି
ଚିର କୁମାର ବ୍ରତ
ଜୀବନ ଜୀବନର ତପ ।

ପରମ୍ପରାକୁ ଉଜାଡ଼ି
ସମାଜକୁ ପଛକରି
ସମସ୍ତ ସମ୍ଭାବନାକୁ
ଭୁଲ ପ୍ରମାଣିତ କରି
ତମେ ଠିଆ
କୁଞ୍ଜବନର ରାଧା
ସ୍ମୃତି କ୍ଷେତରେ
ସବୁଜ ଯାତନା ।

ହେ ମତ୍ସ୍ୟକନ୍ୟା !
ଉତ୍ତାଳ ବୟସର ପରିଧିରେ
ଅବତରିଛ ପରୀ ପରି
ମଧୁର ଆହ୍ଲାଦର ବନ୍ୟା ।
ପପ

## ଅରଣ୍ୟରୁ ପ୍ରେମ

ସବୁ ଧର୍ମରୁ ସୃଷ୍ଟି ହେଲା ଅରଣ୍ୟ
ଅରଣ୍ୟରୁ ପ୍ରେମ ।
ଲୋଡ଼ିବା ପଣରୁ ସଂଚରିଲା ପବନ
ରୌଦ୍ରତାପରୁ ଘୂର୍ଣ୍ଣିବାତ୍ୟା ଓ
ଧ୍ୱଂସର ତାଣ୍ଡବରେ ସିଂଚିବାକୁ ସୃଜନ ଅମୃତ
ଅରଣ୍ୟ ଜାତ କଲା ଦ୍ରୁମ ।

ଯା'ର ନାଶରେ ସୃଷ୍ଟିର ବିନାଶ
ଯା'ର ସର୍ଜନାରେ ପୃଥ୍ୱୀର ଉଲ୍ଲାସ ।
ମୁଁ ଜାଣେନା ଜଙ୍ଗଲ ଉଜୁଡ଼ି ଗଲେ
କେମିତି ସଭ୍ୟତା ଗଢ଼େ
ମୁଁ ଜାଣେନା ଅରଣ୍ୟ ପୋଡ଼ିଗଲେ
ସର୍ବଗ୍ରାସୀ କ୍ଷୁଧାର ଲୁଦୁବୁଦୁ ବ୍ୟାଧି କେମିତି ନିର୍ବାପିତ ହୁଏ
ମୁଁ ଜାଣିଛି ଜଙ୍ଗଲ ସହିତ
ଧ୍ୱଂସ ହୁଅନ୍ତି ଦୃଶ୍ୟ ଅଦୃଶ୍ୟ ଜୀବନ ସକଳ
ପ୍ରେମ ପ୍ରବଣତାର ଅନେକ କାହାଣୀ
ଭାଙ୍ଗି ଭାଙ୍ଗିଯାଏ ହୃଦତଳରେ ଅନେକ ବସା
ବେଘର ହୁଅନ୍ତି ପକ୍ଷୀ ଓ ସରୀସୃପ ।

ହଜାର ହଜାର ବର୍ଷରୁ ନିଆଁ କୁହୁଳୁଛି
ସଭ୍ୟତାର, କ୍ରାନ୍ତିର, ଅଗ୍ରଗମନର
ମଣିଷର ଲୋଭ ଓ ଅସରନ୍ତି ପିପାସାର ।

## ।। ସମୟ କୁହେନା କିଛି ।।

ମୁଁ ଜାଣେନା କେବେ ଥମିବ ଏ ନିଆଁ
ମୁଁ ଜାଣେନା କେବେ ଅନ୍ତହେବ ଅରଣ୍ୟପୋଡିର;
ଏତିକି ଜାଣେ ମନପୋଡ଼ି ଅପେକ୍ଷା
ଅରଣ୍ୟ ପୋଡ଼ି ଅତି ମର୍ମନ୍ତୁଦ ଶୋକ ଜରଜର
ନା ଦେଖେଇ ହୁଏ
'ଆରଦୃଶ୍ୟ' ପରି ସନ୍ତାପିତ ହୃଦୟର
ଅଳିଭା ଅଂଗାର ।

ମୁଁ ଜାଣେନା ଏ ଜଙ୍ଗଲ କିଏ ଗଢ଼ିଥିଲା
କାହିଁକି ଗଢ଼ିଥିଲା
ମୁଁ ଜାଣେନା ଏ ଜଙ୍ଗଲକୁ ଆମେ କ'ଣ
ଦେଇଛେ ନା ନାହିଁ
ଏତିକି ଜାଣେ ଗଛ ଆମକୁ
ଜୀବନ ଦେଇଛି
ଅଭୟ ଦେଇଛି
ଅମୃତମୟ କରିଛି;
ସନ୍ତାପିତ ହୃଦୟରେ ଶୀତଳ ପ୍ରଲେପ ଦେଇଛି ।

ଭଙ୍ଗା ପରାଣକୁ ଯୋଡ଼ିଛି
ଆକାଶ ଓ ମାଟିର ଅନଶ୍ୱର ସଂପର୍କ ଗଢ଼ିଛି ।
ଜଙ୍ଗଲ ଥିଲେ
ଲାଗେ କେହି ଜଣେ ନିଜର ଅଛି
ଅନାଥ ଜୀବନର ସାହାରା ହୋଇ
ଲାଗେ ମା' ମାଟି ଅହି ସୁଲକ୍ଷଣୀ
ହୃଦସାରା କେରିକେରି ବଉଳର ବାସ୍ନା
ଯମୁନାରେ ହିଲ୍ଲୋଳିତ ପ୍ରୀତିର ଫୁଆରା
କେହି ଜଣେ କୁଞ୍ଜବନେ ଅହରହ ମୁରଲି ଫୁଙ୍କୁଛି;
ଲାଗେ ସବୁ ଧର୍ମରୁ ଅରଣ୍ୟର ସୃଷ୍ଟି
ଅରଣ୍ୟରୁ ପ୍ରେମ ।
□□

# ଚିର ବିରହ

ସେ ଏକ ରାଗ ନୁହେଁ
ଭାବାବେଗ
ମଲ୍ଲାରରେ ବତାସ ଓ ଝଡ
ଆମ୍ଭର ସୁମ୍ ସନନ...।

ରୁମ୍‌ଝୁମ୍ ବର୍ଷାର ପ୍ରେମ
ଜରତାର ଆଲିଙ୍ଗନ
ଭିଜାଭିଜା ପବନର ଆମନ୍ତ୍ରଣ
ମରୁ ଭିତରେ ସୃଜନର ସ୍ଫୁରଣ
ସମର୍ପଣର ଅମୃତ ଭାଣ୍ଡ ।

ଐଶ୍ୱର୍ଯ୍ୟମୟ କାରୁକାର୍ଯ୍ୟ ଦେହର
ଉଲ୍ଲାସମୟ ସଞ୍ଚାଳନ ପ୍ରାଣର
କୋଣାର୍କ ପରି ବୈଦୁର୍ଯ୍ୟ ମଣ୍ଡିତ ଶାନ୍ତ
ମେଘ ମେଘ ବିରହ ।

ସେ ଏକ ରାଗ ନୁହଁ ଭୋଗ
ଅନିର୍ବଚନୀୟ କୋହ
ମନ୍ଦିର ନୁହଁ ଦେହ
ବେଦନା ବିଧୂର ମୁହୂର୍ତ୍ତ ଚିର ବିରହ ।
□□

# ଚନ୍ଦ୍ରିକା

ବୁଆଳି ଗଡର ସୀମାନ୍ତରୁ ଶୁଭୁଥିଲା
ବାଘର ହେଂଟାଳ
ଗଜରାଜର ବୃଂହିତ
ଚନ୍ଦକା ବିନୀଦ୍ର ଥିଲା ଶତାବ୍ଦୀ ଧରି
ଶିକାରରେ ଗଜପତି ମୃଗୟୁ ବେଶରେ
ରହି ରହି କାନ୍ଦୁଥିଲା ରାଜକନ୍ୟା
ଚନ୍ଦ୍ରିକା କିଶୋରୀ ।

ଜଙ୍ଗଲର ଶିରା ପ୍ରଶିରା ଭେଦି
ଉଠୁଥିଲା ଝିଂକାରୀର ଡାକ
ବଶଂବଦ ମୃଗ ସବୁ ଛାଡିଦେଲେ ବାଟ
ଅଜଗର ନିଦ ଭୁଲି ସାମିଲ ଥିଲା ଶୋଭାଯାତ୍ରାରେ
ରାଜକୁମାରୀଙ୍କ ଚାହାଣୀ ଆରପଟେ
ଧ୍ୟାନମଗ୍ନ ଋଷି ପରି ବିରାଟ ପର୍ବତ
ଏପଟେ ଯୋଦ୍ଧୃବେଶରେ ଗଛବୃଛ ପଶୁପକ୍ଷୀ ।

ବାଃ ଇତିହାସ ବଖାଣୁଥିଲା
ବୃଦ୍ଧ ବରଗଛ
କିଂବଦନ୍ତୀର ବଡଶାଳ ରକ୍ତାକ୍ତ ଥିଲା
କାଠୁରିଆର ଚୋଟରେ
ମାଟିର ବୁକୁ ଫଟାଇ ଝରଣା ବୋହି ସାରିଥିଲା

କାଠହଣା ତିଆରି ସାରିଥିଲା ବସା
ଶଂଖଚିଲ ଉଡୁଥିଲା ଚକ୍‌କ୍ର କାଟି
ଏକାକୀ ଦନ୍ତା ହାତୀ ଖୋଜୁଥିଲା
ପ୍ରିୟାର ସାନ୍ନିଧ
ମିଳନର ରାତି ।

ଏମିତି ଏମିତ ଖୋଲିଯାଏ ଇତିହାସର ପୃଷ୍ଠା
ଅଶ୍ୱ ଝପଟାଇ ଚାଲିଆସେ ଚନ୍ଦ୍ରିକା ଦେବୀ
ଗଙ୍ଗବଂଶୀ ଗଜପତି କନ୍ୟା
ବାଟ ଓଗାଳନ୍ତି ପୀତପାଦ ଶ୍ରମଣ
ଶାନ୍ତିର ବାର୍ତ୍ତା ପ୍ରସରିଯାଏ ଚନ୍ଦକାରୁ ଧଉଳିଗିରି
ରତ୍ନଗିରିରୁ ମହାନଦୀ ।

ଚନ୍ଦ୍ରିକା ଆନମନା ହୁଏ ଜହ୍ନରାତିରେ
ଉଜାଗର କରୀଣିର କାମଲିପ୍ସା ଥମିଯାଏ
କଳା ମଚମଚ ବାହୁ ପ୍ରସାରୀ ଆଦିବାସୀ ଧାଙ୍ଗଡା
ପୋଡା ମାଂସର ଖାଦ୍ୟ ପରସେ ଶିଆଳି ପତ୍ରରେ
ରାଜକନ୍ୟା ଖାଦ୍ୟକୁ ପରଖେ
ଆଖିଥାଏ ଧାଙ୍ଗଡାର ବଳିଷ୍ଠ ବପୁରେ
ମହାନଦୀ ଖଳଖଳ ବହୁଥାଏ ବନ୍ୟା ରଚି
ରାତି ନିବିଡ ହୁଏ ନିର୍ଜନ ବି
କୁଆଁତାରା ସହ ଧାଙ୍ଗଡା ରାଜକନ୍ୟା
ଶିବିରରୁ ସନ୍ତର୍ପଣେ ଅପସରିଯାଏ ।

ଉଷାର ପହିଲି ସ୍ପର୍ଶରେ
ଗେରୁଆ ବସ୍ତ୍ରରେ ବୁଦ୍ଧଂ ଶରଣଂ ଗଚ୍ଛାମି
ସହିତ ବାହାରି ଆସେ ଚନ୍ଦ୍ରିକା
ଯୁଦ୍ଧ ନୁହେଁ ଶାନ୍ତି କାମ୍ୟ
ସହଜ ତପସ୍ୱୀ ପୀଦପାଦ ହିଁ ଶରଣ ।
ଖିଲ୍‌ଖିଲ୍ ହସୁଥାଏ ଜହ୍ନ ।

ମହାନଦୀ ପାଣି ନେଉଥାଏ ପ୍ରଶାନ୍ତିର ନିଶ୍ୱାସ
ମଦମତ୍ତ ହସ୍ତୀ ଶାନ୍ତ ପଡିଯାଏ
ବୁଆଳିଗଡର ବିରାଟ ପ୍ରାନ୍ତର ଖାଁ ଖାଁ
ଗାଉଥାଏ ଶାନ୍ତିର କବିତା
ଈଗଲ ବସିଥାଏ ଗଛଡାଳରେ
କୋପତ ଚକ୍‌କର କାଟୁଥାଏ ଆକାଶ ସାରା
ମଶାଣିଚଣ୍ଡି ଶୋଇଥାଏ ମଡା କଡରେ
ସିଦ୍ଧାଚାର୍ଯ୍ୟ ଗୁଣୁଗୁଣାଉଥାନ୍ତି ମନ୍ତ୍ର
ସାଂଧ ଭାଷାରେ
ଡୋମ୍ବି ବୋଲି ଯାହାକୁ
ସିଦ୍ଧି ପ୍ରଦାନ କରନ୍ତି
ସେ କାମଚର୍ଯ୍ୟାର ବହୁ ଉପରେ
ଦେହରୁ ଊର୍ଦ୍ଧ୍ୱରେ ବିଦେହ
କାମରୁ ଊର୍ଦ୍ଧ୍ୱରେ ଅକାମ
ଚେତନା ରହିତ ଅଚେତ ଅଭେଦ
ଆଖ୍ୟାୟିକା;
ଚନ୍ଦ୍ରିକା ଚନ୍ଦ୍ରିକା ଚନ୍ଦ୍ରିକା ! !
□□

# ଅଜଣା ବଣର ସାରୀ

ଘଂଚ ଶାଳ ବଣ ଭିତରେ
ନୀରବ ନୀରବ ଚାହାଁଣିର କିଶୋରୀ
ଅରଣ୍ୟର ସ୍ତୋତ୍ର ପଢି ପଢି କ୍ଳାନ୍ତ
ଦଳେ ହରିଣୀ
ଠିକଣା ହଜା କିଛି ଗାଁ କିଛି ଜନପଦ
କନକନ ପ୍ରେମ ପରି ବୁଡିଅଂଚଳର ସରହଦ
ସେଇଠି ଅନାବନା କିଛି ସ୍ମୃତି
ବାଟବଣା ଚଲାପଥ
ନିଆଁ ଝୁଲରେ ସିଝିଥିବା ଉହ୍ଲେଇ ପରି
ସାନ୍ତ୍ୱନାର ଶବ୍ଦ ଇତଃସ୍ତତ ତ
ଫେରୁଥିବେ ଦଳଦଳ ଧାଙ୍ଗଡା ଧାଙ୍ଗଡି କାମ ସାରି ।

ଭାଙ୍ଗି ପଡୁଥିବ ଯେତେ ନୂଆ ନିର୍ମାଣର ନକ୍ସା
ପୁରୁଣା ପୁରୁଣା ଲାଗୁଥିବ ଭବିତବ୍ୟ
ଜଙ୍ଗଲ ଦିଶୁଥିବ ସେକ୍ସି
ବିଚକ୍ଷଣ ଲୋକେ ଘେନୁଥିବେ ବିପିଏଲ୍ କାର୍ଡ
ଉଦ୍ୟମରତ ନେତାମାନେ
ଚଢୁଥିବେ ତୈଳାକ୍ତ ଖୁଂଟକୁ
ଇତିହାସ କ୍ଷତି ସହୁଥିବ
ସଂସ୍କୃତି ହଜିସାରିଥିବ ତ

## ।। ସମୟ କୁହେନା କିଛି ।।

ଘଟଣାସବୁ ପୁଣି ସଜାଡି ହେଉଥିବେ
ଯେମିତି ଚଳଚିତ୍ରର ରୋମାଂଟିକ୍ ସିନ୍‌ର ସୁନ୍ଦରୀ ।

କରିଥିବେ କଳ୍ପନାରେ ସମୟ ସାରା
ପକ୍ଷୀର ଥଂଟ ସନ୍ଧିରୁ ଝରୁଥିବ ତାଜା ଶବ୍ଦ
ଆବେଗର ମାରାଥନରେ
ସଜା ହୋଇଥିବ ଭାବର ନଅର
ପାଖଛଡା ମୁହୂର୍ତ୍ତ ସବୁ
ମଜା ନେଉଥିବେ ବସନ୍ତର
ବିଦ୍ୟୁତ୍ ତାର ଉପରେ
ଧାଡି ଧାଡି ପକ୍ଷୀ ପରି ନିର୍ବିକାର
ଚିହ୍ନା ଚିହ୍ନା ଆତ୍ମାର ଦୋସର
କିଏ କେଉଁ ଜାଗାର କିଏ ନିଜର କିଏ ପର
କିଛି ବି ପ୍ରଶ୍ନ ନଥିବ
ସନ୍ତର୍ପଣରେ ଗୁଣୁଗୁଣାଉଥିବା ଆଶିଣର ଜହ୍ନ
ପରକୀୟାରେ ଜୀବନ ବିତାଇସାରିବା ପରେ
ଠୁଳ ହେଉଥିବେ ଯେତେ କିଂବଦନ୍ତୀ ହୃଦୟର ତ ଯେତେ
ବ୍ୟବଧାନ ସଂକୁଚିତ ହୋଇଯିବ ଆକାଶର
ବିରଳ ଉଦାହରଣ ସବୁ କଡମଡ ଭାଙ୍ଗି ଠିଆ ହେବେ
ଯେମିତି ଅଜଣା ବଣର ସାରୀ ।
ନିରବ ଚାହାଣିର କିଶୋରୀ
କାମରୁ ଫେରୁଥିବା ଧାଙ୍ଗଡା ଧାଙ୍ଗଡି
ଚଳଚ୍ଚିତ୍ରର ସୁନ୍ଦରୀ
ଅଜଣା ବଣର ସାରୀ
ଲେଲିହାନ୍ ପ୍ରେମ ଓ ଲୁହଲୁହାଣ କବି
ଶବ୍ଦ ଖୋଜୁଥିବେ କୋଉଠି
ଏଇଠି ନା
ମୋକ୍ଷର ସୁଡଙ୍ଗ ଯୋଉଠି ।
□□

# ପ୍ରତିବାଦ

ପ୍ରତିବାଦ କରିନି ବୋଲିତ ବଞ୍ଚିଛି
ପ୍ରତିବାଦ କରିଛି ବୋଲିତ ଜୀବନ ଚାଲିଛି
ଏଥର ଦେଖିରେ ତମେ
ଏ ବକ୍ତବ୍ୟକୁ ନେଇ ।

ଫଗୁଣ ଚୋରାଇ ନେଇଚି ନଈ
ଜଙ୍ଗଲ ଗିଳି ସାରିଚି ଦିଗନ୍ତ
ଆକାଶ ପେଟରେ ସାରା ସମୁଦ୍ର
କୁମ୍ଭୀର ହଜମ କରି ସାରିଛି ମାଙ୍କଡ଼ କଲିଜା
ଏଥର ଫେରିବା ମୂଳ ପ୍ରଶ୍ନକୁ
ପ୍ରତିବାଦ କରିବା
ଫଗୁଣ, ଜଙ୍ଗଲ, ଆକାଶ ଓ କୁମ୍ଭୀର ବିରୁଦ୍ଧରେ
ଅଧିକାର ଫେରେଇ ଦେବା
ନଈ, ଦିଗନ୍ତ, ସମୁଦ୍ର ଓ ମାଙ୍କଡ଼ର
ପୋଡିଯାଇଥିବା ତିଅଣ ପରି
ଏ କାହାଣୀ ଗଢ଼ା ହେଉଥିବ
ବିନା ଶ୍ରୋତାରେ ଫିଙ୍ଗା ହେଉଥିବ ।
ପ୍ରତିବାଦ କରିପାରିଛି ବୋଲିତ
ଜୀବନ ଚାଲିଥିବ ।
□□

# ସେ କୂଳର ନାଆ

ଗଛ ଡାଳରେ କାହାର ବସା
ମୁଁ ଜାଣେନା
ସମୟ ସୁଅରେ କିଏ ଭାସିଯାଉଛି
ମୋ ସହିତ ପରିଚୟ ଅଳ୍ପ ସମୟର
ସେ କାଲିର
ମୁଁ ଆଜିର
ମଝିରେ ବର୍ଷା ପାଣିରେ ଉନ୍ମତ୍ତ ନଈଟିଏ ।

ଗଛକୁ ସବୁକଥା କହି ହୁଏ
ଝରାପତ୍ର ପରି ଭଣିତା କରି ହୁଏ ଦୁଃଖର
ସୁଅ ମୁହଁରେ ପତର ପରି
କିଏ କୁଆଡେ, ପରିଚୟ ହଜିଯାଇଛି
ମନକଥା କହି ହେଉନି
ହୃଦୟକୁ ମନ୍ଥି ବାହାରି ଆସୁଥିବା ଶବ୍ଦ
ପାଣି ଭଉଁରୀରେ ଲୀନ ହୋଇଯାଉଛି
ଯୋଉଠି ପ୍ରେମିକା କହି ଜଣକୁ ଛାଡିଥିଲି
ସେଇଠି ଆଉ କିଏ ବସିଛି
ମୋ ନାଁ ବଦଳରେ ଆଉ କା'ର ନାଁ ଡାକୁଛି;
ପ୍ରାଚୀନ କୀର୍ତ୍ତି ପରି ପ୍ରେମର ଶିଳାଲିପି
ଖୋଦେଇ ହୋଇଛି ମନ୍ଦିର ସାରା

॥ ସମୟ କୁହେନା କିଛି ॥

ଅଜଣା ଗଛକୁ ଆଉଜି ରଖା ହୋଇଛି
ସିନ୍ଦୁର ବୋଳା ପଥରଟେ
ଗଞ୍ଜୋଡ ପୂଜାରୀଟିଏ ବଡ ପାଟିରେ
ପ୍ରତ୍ୟକ୍ଷ ଦେବୀଙ୍କର ମାଜଣା କରୁଛି
ମୁଁ ସେଇ ବାଟରେ ଗଲାବେଳେ
ବାଟ ଦିଶୁନି, ମୁଁ ଆଉ ମୁଁ ନୁହଁ
ପଥର ପାଲଟିଛି ।

ନଈ ସେ କୂଳରେ ନାଆଟିଏ ବନ୍ଧା ହୋଇଛି
ଏ କୂଳରେ ନାଉରୀ ସହ ମୁଁ ମାତିଛି
ଖଞ୍ଜଣି ମାଡରେ
କିଛି ଘାଟ ଫେରା ଯାତ୍ରୀ
କାଲିର ଆଜିର ଓ ଆସନ୍ତାକାଲିର
ଜମା ହେଲେଣି
ଭଜୁକିନା ରାମ ନାମର ଚିତ୍କାର
ପାଣିର ଢେଉପରି ଉଠୁଛି ପଡୁଛି

ନା'
ଆଉ ନାଆ ଆସିବନି
ପାରି ହେଇ ପାରିବିନି ନଦୀ ।
□□

# ପଳାତକ ସମୟର ମୁଁ ଏକ ଚିହ୍ନ

ଆଦିମ ଧ୍ୱନି ସବୁକୁ
ପଳାଶ ନିଆଁରେ ଜାଳି
ଫାଲ୍‌ଗୁନର ଫଗୁ ପରି
ଦିକ୍ ଦିକ୍ ଜାଳ ।

ଚେତନାର ଛକ ପାରି ହୋଇ
ଆତ୍ମାର ଆଲୋକ
ଛାଇଯାଏ ଧ୍ୱନିର ଗହନ
ଭୂମିସ୍ପର୍ଶୀ ଦିଗନ୍ତକୁ ଛାଡ
ଭୂମିଚ୍ୟୁତ ହୁଏନା କଦାପି
ଆକାଶର ରଂଗ ମାଖି ରଙ୍ଗୀନ ହୁଏ ସମୟ ।

ଜୀବନର ସମସ୍ତ ଭୂମିକା
କୋଣାର୍କର ଚିତ୍ରମୟ ଶିଳା
ମୃତ୍ୟୁକୁ ଏଡାଇ ଦିଏ
ମଲ୍ଲୀଫୁଲ ଚାହାଁଣୀରେ
ରହିତ ହୋଇଯାଏ ଯେତେ ସଂଭାବନା
ମୃତ୍ୟୁ ଏବଂ ଅସହାୟ ପତର;

ଧରମା ବି କଡ ଲେଉଟାଏ
ନିଆଁ ପରି ଜଳି ଉଠେ ବାଜିଆର ସ୍ମୃତି

## ।। ସମୟ କୁହେନା କିଛି ।।

ଜାଳିଦିଏ ଅସତ୍ୟର ଅନ୍ଧାରକୁ
ନିମ ଗଛେ ଫୁଲ ଫୁଟେ
ନଦୀକୂଳେ ନାଚି ଉଠେ ଉଆସର ଛାଇ
ଚନ୍ଦ୍ରଭାନୁ ଲେଖୁଥାଏ ଚିଠି
ପ୍ରେମରେ ପଡନ୍ତି ସବୁ ପ୍ରତିମା ନାୟକ
ଓ ଅଳକା ସାନ୍ୟାଲ
ଜୀବନରେ ଘୋଟିଆସେ
ବିଷଣ୍ଣ ଗୋଧୂଳୀ
ପ୍ରେମଠାରୁ ଜୀବନର ଉଚ୍ଚତାକୁ ମାପି
ଶବ୍‌ଦଠାରୁ କବିତାର ଦୀର୍ଘତାକୁ ପରଖି
ତୁମେ ଏକ ଉତ୍ତୀର୍ଣ୍ଣ ଶ୍ରାବଣ
ବର୍ଷି ଅଛ ଭିଜା ଭିଜା
ପୃଥିବୀର ବସନ୍ତରେ
ଲେଖିଦେଇ ଏସିଆର ସ୍ୱପ୍ନ
ସମୟତ ପଳାତକ ନୁହେଁ
ବରଂ ସ୍ତବ୍ଧ ।

ଶବ୍‌ଦର କୃଷ୍ଣାନଦୀ ବହୁଥାଏ ଧୀରେ
ଚାରିଆଡେ ଉଲ୍ଲାସ ପାର୍ବଣ
ରଂଗମୟ ଇତିହାସ ତଳେ
ତମେ ଏକ ଜୀବନ୍ମୟ ଚିହ୍ନ
କବିତା ଫାଲ୍‌ଗୁନ୍ ।
□□

# ଶୂନ୍ୟତାର ଦୃଶ୍ୟ

ନାଭିପଦ୍ମରୁ ଗଳୁରି ଆସୁଛି
ଭବିତବ୍ୟ କେଜାଣି କୋଉ
ସ୍ୱର୍ଗ ଆଡେ
ଶୂନଶୂନ୍ ଭାବନାର କେନ୍ଦ୍ରରେ
ଲଂଘିଛି ଇତିହାସ ?

ଲେଲିହାନ ଜୀବନର ପୃଷ୍ଠାରେ
ଲେଖା ସରିଛି ସମସ୍ତ ଅକ୍ଷର
ଦୁଃଖର ଶୋକର
ଜର୍ଜରିତ ପ୍ରେମର ।

ଏବେ ଆଲୋକ ଆସିବା
ବିଳମ୍ବ ଅଛି
ଏକ ପ୍ରହେଳିକା ଭିତରେ
ଭ୍ରୁଣ ଖୋଜୁଛି ରାସ୍ତା
ନୀଳନୟନ ଭିତରେ ସୃଷ୍ଟି
ହେଉଛି ଶୂନ୍ୟତାର ଦୃଶ୍ୟ ।

କେଜାଣି, କାହାର ପ୍ରେମ
ଛନ୍ଦୁଛି ଜୀବନକୁ ଛଟପଟ କରି
କିଏ ଶୋଷି ନେଉଚି ବିଷ
ଆତ୍ମାରୁ ରହି ରହି

## ।। ସମୟ କୁହେନା କିଛି ।।

ଚାରିଆଡେ ବ୍ୟାପିଯାଉଛି
ଏକ ଉଜ୍ୱଳ ଅନ୍ଧାର
ଲହ ଲହ ସାପର ଜିଭ ପରି,
ନେତାଙ୍କ ମିଛି ମିଛିକା
ଆଶ୍ୱାସନା ପରି ଦିଗନ୍ତରୁ ଶୁଭୁଛି
କାହାର ଡାକ,
ଘୋଡାଇ ଦେଉଛି ହୃଦୟର
ଉଲ୍ଲାସପଣକୁ
ହିଂସ୍ର ଜାନୁୟାର ସବୁ ଲଂଫ
ମାରିବାକୁ ଉଦ୍ୟତ
ହୃଦୟରୁ
କେଜାଣି, ସେମାନେ ପଦ୍ମ ନାଡକୁ
ଖିନ୍‌ଭିନ୍ କରି କେଉଁ
ଇତିହାସ ରଚିବେ ।

କେଉଁ ସ୍ୱର୍ଗ ଆଡେ ତାଙ୍କର
ପ୍ରୟାଣ
ନାଭିପଦ୍ମରୁ ଗଜୁରୁଥିବା ଭ୍ରୁଣ
କାହାର,
ମୋର ନା
ମୋର ଭାବନାର...।
❐❐

## ସିଡି ତିଆରିରେ ସମସ୍ତ ଜୀବନ

ସମସ୍ତ ଜୀବନ ବିତିଗଲା
ସିଢି ତିଆରିରେ
ନା ସରୁଛି ନିର୍ମାଣ
ନା ଚଢ଼ିପାରୁଚି ସିଡି
ଯେଉଁଠି ଛାଡିଯାଇଛି କୋଉକାଳୁ
ସେଇଠି ବସିଛି ।

ଏମିତି ଏମିତି ସାରା ଜୀବନ
ଖେଳିବାର ଯୋଗାଡ
ପଡିଆ ତିଆରିରେ
ସରିଯାଉଛି ଖେଳ ସମୟ
ଶବ୍‌ଦ ସାଉଁଟୁ ସାଉଁଟୁ
ନିଖୋଜ ହୋଇଯାଉଛି କବିତା ।

ତମକୁ ଦେଖୁ ଦେଖୁ ତଟସ୍ଥ ହୃଦୟ
ଆଖି ଓ ଓଠ ନିରବ
ସରିଯାଉଛି ସାକ୍ଷାତ ସମୟ;
ଆଖିରେ ଲୁହ କେତେ ଯୁଗର
ହୃଦୟରେ କୋହ ଜନ୍ମଜନ୍ମର
କିଛି ଦିଶୁନି କିଛି ଅନୁଭବୁନି
ଏକ ଅନନୁଭୂତ ଶବ୍‌ଦ ରାସ

## ।। ସମୟ କୁହେନା କିଛି ।।

କାକତାଳିୟ ନ୍ୟାୟରେ ପରଖୁଛି ସମୟ
ଯୌବନର ନିତ୍ୟ ଫାଲ୍‌ଗୁନ ।

ବର୍ଷବର୍ଷର ସାକ୍ଷାତ
ଯୁଗଯୁଗର ପୁଞ୍ଜିଭୂତ ବେଦନା
ଏକ ହାହାକାରର ରୂପ ନେଉଛି କାହିଁକି ?
ସ୍ୱର୍ଗକୁ ନିଶୂଣି ଗଢ଼ିବାରେ
ହାହାକାରକୁ ପାଥେୟ କରି ଚାଲିବାରେ
ନିକଟ ହେଉଛି ଯିବା ସମୟ ।

ଅତ୍ୟାଚରିତା କିଶୋରୀଟିଏ ଧରିଛି ହାତ
ଉଜୁଡା ଜଙ୍ଗଲଟିଏ ବିସ୍ତାରିଛି ବକ୍ଷ
କୁହ, କୋଉଠି ଜୀବନର
ଭୟ କହୁଛି କୋଇଲିଟିଏ
ନିର୍ବିକାର ପଲେ ହରୀଣ
ସୂଚାଉଛନ୍ତି ଅରଣ୍ୟର ରୂପ ।

ସାରାଟା ଜୀବନ ଏମିତି ବିତିଗଲା
ନା ସିଡି ତିଆରି ହେଲା ନା ପଥ
ଛଳନାର ବାଟଟିଏ କେତେ ସହଜ ଗଢ଼ିବା
ଜୀବନର ଗୀତଟିଏ ତାଳରେ ଗାଇବା କେତେ କଷ୍ଟ;
ବହୁ ଦୂରରୁ ଉଡି ଆସିଥିବା ପକ୍ଷୀ
ଆକାଶ ଛୁଇଁ ପାରିନି
ସାରା ଜଗତକୁ ଆବୋରିଥିବା ପବନ
ଆବେଗକୁ ଧରିପାରିନି
କେରି କେରି ଦୂବର ଶେଯରେ ପାଦଥାପି
ଉହୁଁକୁଛି ଆକାଶକୁ
ନା ଛୁଇଁ ପାରୁଛି ନା ଦେଖିପାରୁଛି ଶୂନ୍ୟବିନ୍ଦୁ;
ସିଡି ତିଆରିରେ ସାରାଟା ଜୀବନ
କୋଉ କାଳୁ ମୁଁ ବସିଛି ସେଇ ବିନ୍ଦୁରେ ।
□□

## କବିତା କୁଆଡେ ଯାଏ

ଲେଖିଦେଲାପରେ
କବିତା ଜୀବନ୍ମୟ ହୁଏ
କୁଆଡେ ଯାଏ ଭାବ ?
ସବୁଠି ସଂଚରିଯାଏ ମେଘପରି
ସମୁଦ୍ରର ଜଳି ପରି
ଅଦ୍ଭୁତ ଭିଆଣ
କଳକଳ ସୁରର ପୁରାଣ ।

ନା କୁଳୁ କୁଳୁ ନଈର ସୁରରେ
ଭୁଲିଯାଏ ପାହାଡର ପ୍ରାଚୀନ କୋଳ
ଯୌବନ ନିଶାରେ ଘାରି
ଅଂଧ ହୁଏ ସାଗର ପ୍ରେମରେ ।

କିଏ ଜାଣେ
ତୁମେ ନା ମୁଁ
ଲେଖିଦେଲା ପରେ
କୁଆଡେ ଉଭାନ୍ ହୁଏ କବିତା
ଶବ୍ଦରେ ନା ଅର୍ଥରେ ?

ଶହ ଶହ ଭଣିତା ପରେ
ଆମେ ଫେରିବା ମୂଳ ପ୍ରଶ୍ନକୁ

|| ସମୟ କୁହେନା କିଛି ||

ଶୂନ୍ୟତାକୁ ହାତରେ ଧରି
ଦିଗ୍‌ବଳୟ ହାତର ଲାଲିମା
ପରିଚୟ ହଜା ମେଘର କାଳିମା
ଆହୁରି ସୁନ୍ଦର ହେଉ ବୋଲି
ପ୍ରାର୍ଥନା କରିବା
ଶବ୍ଦର ଚେରକୁ ଟାଣି ଓଟାରି
କାଢ଼ିଆଣିବା ପ୍ରତ୍ୟୟର ନୀଳ ଦଂଶନରୁ
ଯୋଉଠି କବିଟିଏ ପୁଣି ପଢୁଥିବ କବିତା
ଭଙ୍ଗା ଭଙ୍ଗା ଶବ୍ଦକୁ ଏକାଠି କରି
ଶିଶୁର ଇତସ୍ତତଃ ଖେଳନା ପରି;

ଅତୀତ ଭିତରୁ ବେଳେବେଳେ
ଉକୁଟି ଉଠେ ସୁନ୍ଦର ଭାବ
ଭାବରୁ ଫୁଟି ଉଠେ ସୌନ୍ଦର୍ଯ୍ୟ
ସୌନ୍ଦର୍ଯ୍ୟ ଭିତରେ କଳା
ଖେଳୁଥାଏ ଚକାଚକା ଭଉଁରୀ
ଏକାକୀ ନଈ ପହଁରାରେ
ଆକ୍ରାମାକ୍ରା ହେବା
ନିରବତାର ଗୁଣ
ତା' ଭିତରେ
ନିଭୃତରେ ଘଲିଥାଏ
କବିତା ଗଢଣ ।

ଲେଖି ଦେଲା ପରେ
କବିତା କୁଆଡେ ଯାଏ ?
କୁଆଡେ ?
□□

# ଅଭୁଲା ସ୍ମୃତି

ପ୍ରେମ:
କେବଳ ଦୁଇଟି ଜୀବନର ଦସ୍ତାବିଜ ନୁହଁ
ନୁହଁ ପ୍ରଣୟୀଙ୍କ ଖରଶ୍ୱାସ, ଦେହଜ ମିଳନ
ଦୁଃଖସୁଖ ଏକାକାର
ମଛିମିଛିକା ଖେଳଘର ଶୂନ୍ୟର ମୀନାର ।

ପ୍ରେମ: ଏକ ଚିରହରିତ ଅରଣ୍ୟ
ଗଛ କୋରଡରେ ପେଚ୍ଚ ତ
ଘଞ୍ଚ ଜଙ୍ଗଲରେ ବାଘ
କନକନ ଘଡ଼ାଁଣୀରେ ହରିଣୀ
ତରକି ଛିଡା ହୁଏ
ତା'ର ବାଘକୁ ଡରତ ଶିକାରୀକୁ ବି ।

ଧୀରେ ଧୀରେ ବହିଯାଏ ନଈ ଧାରଟିଏ
ପାହାଡ଼ର କୋଳ ଦୁଲୁକାଇ
ଗଛର ଆତ୍ମାକୁ ହଲାଇ ।
ହଜିଯାଏ ଦେହର ଦରଜ
ହୃଦୟର କଚଡା ଖାଇ ଭାଙ୍ଗେ ସ୍ୱପ୍ନ
ସ୍ମୃତି ସବୁ ଘରବାହୁଡା ବାଟରେ
ଗଢିଦିଏ ଉଇହୁଙ୍କାଟିଏ ।
କାଳେ ବାଲ୍ମୀକିଟିଏ ଜନ୍ମ ନେବ ।

## ।। ସମୟ କୁହେନା କିଛି ।।

ଦେହ ଭିତରେ ମୁଣ୍ଡ ପିଟି
କବିତାଟିଏ ଡେଣା ଝାଡେ
ଥକ୍କା ମନ ଚଲିଥାଏ ବଡଦାଣ୍ଡରେ
ମନର ମହକ ଆକାଶରେ ଉଠେ ।

ବଙ୍କା ହସରେ ଝରେ କେତେ ଶବ୍ଦ
ଟେରଛା ଚହାଁଣୀରେ ଗୀତ ଗାଏ ଋତୁ
ଆକାଶରେ ବିଛାଡି ପଡେ ଇନ୍ଦ୍ରଧନୁ
ସେମାନଙ୍କୁ ପ୍ରଶ୍ନ କରନା
ପ୍ରେମ ମାନେ କ'ଣ ?

ଦେହ ଓ ଦାହ ଭିତରେ କାହିଁକି
ଗର୍ଜୁରି ଉଠେ ଭଂଗା ଛାତିର କୋହ
ଆତ୍ମାରେ ସାଇତା ଥାଏ କୁଢ଼କୁଢ଼ ଦରଜ
ହସିବା କାନ୍ଦିବା ଭିତରେ ପଥର ପାଲଟିଯାଏ
ପ୍ରେମ;
ନିଜକୁ ଝରଣା କରି ଆଉଁସି ଦିଏ
ପୃଥିବୀର ଦରଜ ଭରା ଛାତି
ଛୁଇଁ ଛୁଇଁ ଯାଏ ଘା'  ଭରା କଲିଜା ଓ
ଫଗୁଣ ଭିଜା ଜହ୍ନରାତି ।

ଥରେ ଥରେ ନିଥର ରାତିରେ
ସେ ଭାବରେ ଆସେ
କେତେ ଘୃଣା କେତେ ତିରସ୍କାର
ଆମେ କଳେବି
ସେ ପିଣ୍ଡାରେ ବସେ
ଆକାଶକୁ ଚହେଁ
ମାଟିର ମଞ୍ଜି ଥରାଇ
ଅଭୁଲା ସ୍ମୃତିର କଥା କୁହେ ।
□□

## ମୃଗୟା

ଶବ୍ଦମାନେ ତୀର ହୋଇ
ସ୍ୱପ୍ନ ହୋଇ
ବିଦ୍ଧ କରନ୍ତି ଅରୁଣରାଗର
ପାଦ ପଙ୍କଜକୁ ।

ଭ୍ରମରେ ପାଦ ଦିଶେ
ହରିଣର କାନ ପରି
ଦୋଳିର ଧ୍ୱନି ପଟଳ
ହରିଣର କ୍ୱକ୍ କ୍ୱକ୍ ଡାକ
ଅସଂପୂର୍ଣ୍ଣ କବିତାର ଅନୁରଣନ
ପବନର ପରାଣକୁ ରକ୍ତାକ୍ତ କରେ
କ୍ଷମାଭିକ୍ଷା କରେ ସମୟ
କାନ୍ତହରା କୈବର୍ତ୍ତୀନୀର ସଂସାର ।

ମୁଗ୍ଧ ଅନୁଭବ ସବୁ ନୌକାରେ
ଜଳ ବିହାର କରନ୍ତି
ନୌକା ଓ ନାୟିକାର ପ୍ରଭେଦ ଭିତରେ
ଭଣତି ହୁଏ ସଂଗୀତ
ମୃଗୟାରେ ଚିରଦିନ ବଧ ହୁଅନ୍ତି
ନାରୀ, ନଦୀ ଓ ନଉକା
କବି ଫେରୁଥାଏ ସମ୍ରାଟୀୟ ଶବ୍ଦର
ମୃଗୟା ସାରି ଏକା ଏକା ।

॥ ସମୟ କୁହେନା କିଛି ॥

ମଣିଷ ଗାଉଥାଏ ସେହି ପୁରୁଣା ଗୀତ
ଆଖି ନାହିଁ କାନ ନାହିଁ ବାଜି ଗଲେ
ଦୋଷ ନାହିଁ
କିନ୍ତୁ ବିଷାଦ ତୀର କଷୁଥାଏ ତ
ବିଦ୍ଧ ହୁଏ ପାଦରେ
ରକ୍ତ ଝରେ ତ ତେତ୍ରିଶକୋଟି
ଜୀବ ଲହୁ ଲୁହାଣ ହୁଅନ୍ତି;
କଳା ହରଣ ହୁଏ ଶବ୍ଦର ।

ମଣିଷ ସବୁଦିନ ମଣିଷକୁ ମାରେ
ମାରେ ସମସ୍ତ ଜୀବଙ୍କୁ
ତ୍ରାଣକର୍ତ୍ତା ଶିଆଳି ଲଟାରେ ଝୁଲନ୍ତି
ନିରୁପାୟ
ପବନ ଧିମାଧିମା ବହେ
ମେଘ ଘନେଇ ରହେ ନବର୍ଷି
ଦିଗବଳୟ ଧାରକୁ ଛୁଇଁଛୁଇଁ
ଚାଲିଯାଏ ଶାନ୍ତିର କପୋତ
ନିଶବ୍ଦ ଆକାଶର ଡାକ
ଶୁଭୁଥାଏ ରହିରହି ଦୀର୍ଘଶ୍ୱାସ ପରି
ତ ହରିଣ ଭୁଲିଯାଏ ଚରିବା
ପକ୍ଷୀ ଗାଇବା ।

ପଦ ପଙ୍କଜ ବିଦ୍ଧ ହୋଇ ସାରିଥାଏ
ଶତ୍ରୁତାରେ ନୁହଁ ମିତ୍ରତାରେ
ଗାଢ ରକ୍ତ ରଙ୍ଗରେ
ଶବ୍ଦ ଜହ୍ନ ପରି ଲୁଚୁଥାଏ
ମେଘ ଉହାଡରେ
ନିଷାଦ ସବୁବେଳେ ମୃଗୟା ରଚୁଥାଏ ।
ロロ

## ଧାଡିଏ ବଗ

ଆକାଶରେ କେବଳ ଧାଡିଏ ବଗ
ଏକ ଚିତ୍ରଲେଖା ।

ଚିତ୍ରକର ତୂଳୀ ଧରି ରହିଁଛି
କବି ଶବ୍ଦ ଖୋଜୁଛି
କୈବର୍ତ୍ତ ଅନିଶା କରିଛି ବଗର ଗତିବିଧି
ହିସାବ କରୁଛି ମାଛର ଅବସ୍ଥିତି
କିଏ ଧରି ପାରିଛି ବଗର ମନସ୍ତତ୍ତ୍ୱ
ଚିତ୍ରକର ?
କବି ?
ନା କୈବର୍ତ୍ତ ?

ଏକ ଅତୃପ୍ତ ଜୀଜୀବିଷା
ମନକୁ ଉଚ୍ଚାଟ କରେ
ତୃପ୍ତିରେ ବଢୁଥାଏ ଶୋଷ
ପୋଥି ସରିଗଲେବି
ସରେନି ଗପ
ଆରମ୍ଭ ହୁଏ ରାମାୟଣ ।

ପ୍ରେମରେ ଆଶ୍ରିତ ସମସ୍ତେ
ଯନ୍ତ୍ରଣାରେ ଛଟପଟ ସମସ୍ତେ
ଆହୁରି ପ୍ରାପ୍ତି

## ।। ସମୟ କୁହେନା କିଛି ।।

ଆହୁରି ପିପାସା
ପ୍ରତ୍ୟୟଟେ ଗଢ଼ିବା କଷ୍ଟକର
କାହାଣୀଟି ରଚିବା କଷ୍ଟକର
ଚିତ୍ର ହୋଇପାରେ
କବିତା ହୋଇପାରେ
ଜୀବନ ଗଢ଼ିବା ଭାରି ଯନ୍ତ୍ରଣାଦାୟକ ।

ଧାରେ ବଗ
ସବୁବେଳେ ଥାନ୍ତି ଆକାଶରେ
ଛାଇ ପଡିଥାଏ ଜଳରେ
ଚିତ୍ରକର
କବି
କୈବର୍ତ୍ତ ସଦାବେଳେ ଥାନ୍ତି
କ୍ରମରେ
ନିଷ୍ଫଳ ବିଶ୍ୱାସ ଗଢୁଥାଏ
ଏକ ପ୍ରତ୍ୟୟ
ପ୍ରତ୍ୟୟ ରୂପାନ୍ତରିତ ହୁଏ
ପ୍ରେମରେ ।

ନିର୍ଲିପ୍ତ ଚିତ୍ରକର
ନିର୍ବିକାର କବି
ସ୍ଥିର ବଗ
ଅସ୍ଥିର କୈବର୍ତ୍ତ ଜାଲ ସଜାଡୁ ଥାଏ
ଚିତ୍ରଟିଏ ପୂର୍ଣ୍ଣାଙ୍ଗ ହୋଇପାରେନା
କବିତାଟିଏ ଉତୁରେ ନା

ନୀଳ ଆକାଶରେ କେବଳ
ଧାଡିଏ ବଗ
ସମୟ ହୋଇଯାଏ ।
□□

# ପରମ ପ୍ରଶ୍ନ

ତୁମେ କିଏ
କେଉଁଠି ଜନମ
କେଉଁଠି ରମଣ
କେଉଁଠି ବିଂଚିଲ ସୃଷ୍ଟି ବୀଜ ?

ହେ ବିରାଟ, ହେ ବିଚିତ୍ର
ଏ ଜୀବନ କ'ଣ ତୁମରି ପ୍ରକାଶ ?

ମୂଢ଼ ମୁଁ ଉତ୍ତର ଦିଏ
ପ୍ରାଜ୍ଞ ତୁମେ ପ୍ରଶ୍ନକର
ଆତଙ୍କଗ୍ରସ୍ତ ପ୍ରାଣୀ ମୁଁ
ବୁଝିପାରେନା ତୁମ ସୃଷ୍ଟି ତତ୍ତ୍ୱ
ମୁଗ୍ଧ ଦୃଷ୍ଟି
ଦେଖିପାରେନା କିଛି ।

ହେ ପରମ
ନାନା ରୂପ ନାନା ପରିପାଟୀ
ଅନ୍ଧ ମୁଁ ଦେଖିପାରେନା
ରହସ୍ୟ ଭେଦି
ଐଶ୍ୱରିକ ଶକ୍ତି
ହେ ପରମ,
ପ୍ରଶ୍ନ ତୁମର ଉତ୍ତର ବା କାହିଁ ?
□□

## ସୁବୁଦ୍ଧେଶ୍ୱର

ହେ ପରମ
ହେ ପୁରୁଷ
ତୁମେ ଅର୍ଥର
ନା ଶବ୍‌ଦର
ତୁମେ ତ୍ରିକାଳ
ସମୟାତୀତ
ରାଜାର ନା ପ୍ରଜାର ?

ଏଠି ଯୋଗିନୀଟିଏ କଡଲେଉଟାଏ
ଜଙ୍ଗଲ ସହିତ
ଏଠି ସିଦ୍ଧାଚାର୍ଯ୍ୟ ଚିତ୍ର କରନ୍ତି
ପାହାଡ ଖୋଲରେ
ଜୀବନର ନା ଜୀଜୀବିଷାର ?

କେତେବେଳେ ଶ୍ରଦ୍ଧାରେ ତ
କେତେବେଳେ ପ୍ରେମରେ
କେତେବେଳେ ଶବରୀ ତ
କେତେବେଳେ ମୋହିନୀ
ଶକ୍ତିମୟୀ ଦିଗନ୍ତବ୍ୟାପୀ
ବହୁରୂପରେ ।

ତୁମେ କ'ଣ ପ୍ରକୃତିର ପୁରୁଷ
ତୁମେ କ'ଣ ଯୋଗିନୀର ଆଶ୍ଚର୍ଯ୍ୟ
ତୁମେ କ'ଣ ଶ୍ରମଣାର ବୁଦ୍ଧ ?
ତୁମେ କିଏ ପରମ
ତୁମେ କିଏ ?
ତୁମ ଠିକଣା ମିଳେ ନା
ସରିଯାଏ ଜୀବନ
ତୁମ ରୂପ ଦେଖେନା
ସରିଯାଏ କୁତୁହଳ
ପାପମୟ ସମୟର ତୁମେ ତୃତୀୟ ଚକ୍ଷୁ
ପାରମ୍ପରିକ ପ୍ରେମର ଊର୍ଦ୍ଧ୍ୱରେ
ତୁମେ ବିଶ୍ୱରୂପ
ଯୋଗୀର ମହିମ୍ନ ଶ୍ଳୋକ ।

ପାହାଡର ସୀମା ପାରେ
ନୀଡ ବାନ୍ଧେ ସମୟର ପକ୍ଷୀ
ଡେଣାରେ ଦୁଇଟି ସ୍ୱପ୍ନ ପାପ ଓ ପୁଣ୍ୟର
ଚଂଚୁରେ ଆସ୍ୱାଦୁ ଥାଏ ଜୀବନର ଫଳ ।

ହେ ମହାକାଳ
ହେ ପରମ
ତୁମେ କ'ଣ ରାଜାର
ନା ପ୍ରଜାର
କୋଟି କୋଟି ଜନତାର ଆର୍ତ୍ତ
ମନ୍ତ୍ର ପାଲଟେ
କୋଟି କୋଟି ଜୀବନର ଯାଚଞ୍ଚା
ଲୁହ ହୁଏ ତୁମରି ମାଜଣା ପାଇଁ ।

ହେ ବୁଦ୍ଧ ! ହେ ଈଶ୍ୱର !
ତୁମେ ସୁକାମନାର ମୂର୍ତ୍ତିମନ୍ତ ପ୍ରତୀକ
ସୁବୁଦ୍ଧେଶ୍ୱର ।
□□

# ଅନାହତ ଶବ୍ଦର ରାଗିଣୀ

ଅଂଶୁପା ଏକ ନାରୀ
ଅପରୂପା ସୁନ୍ଦରୀ
ଜଙ୍ଗଲର ବେହରଣ ତଳେ
ଢ଼ାଙ୍କିଦେଇ ସବୁତକ ଲାଜ
ତା'ଭିତରେ ସମାଧିସ୍ଥ ସବୁ ନଦୀ
ଗଛ ଓ ପର୍ବତ
ଗୋଟିଏ ନଦୀର ନାଭି ପଦ୍ମନାଡେ ବଂଧା
ପଦ୍ମଗନ୍ଧା ଯୋଜନ ଗନ୍ଧାରେ ହେଲା ପରିଣତ ।

ଅଂଶୁପା ହିଁ ଜାଣିଥିଲା ଏମିତି ଆସିବେ
ବନ୍ୟାଜଳରେ ଭାସି ସେ ଅପୂର୍ବ ଚିଜ
ଅନେକ ଅନେକ ଦିନ ମାସ ସଂବତ୍ସର
ଅନାହତ ନୂପୁର ଶବ୍ଦରେ ରୁନ୍ଧି ରାଣୀହଂସପୁର
ପାରିଧିରୁ ଫେରୁଥିବେ ସୁବର୍ଣ୍ଣକେଶରୀ
ମୁହଁ ଧୋଇ କାଟକେନ୍ଦୁ ନଦୀର ପାଣିରେ
ଦେଖୁଥିବେ ଶିରସ୍ତ୍ରାଣ ଛବି ଜଳ ଦରପଣେ
ସ୍ମୃତିର ଦିଗନ୍ତେ ।

ଚୋରା ଚାହାଁଣୀରେ ତାଙ୍କ ସୂର୍ଯ୍ୟାଲୋକ ଛବି
ଚହିଁଦେଲେ ଝଲସି ଉଠେ ଲୁହ ବିନ୍ଦୁଟିଏ
ଚକ୍‌ଚକ୍ ଜ୍ୟୋସ୍ନାପରି ଆଖି ଉପକୂଳେ ।
ମୁଁ ଶିହରୀ ଉଠେ ନିଜ ଅଜାଣତେ

## ।। ସମୟ କୁହେନା କିଛି ।।

ଅନ୍ଧାରକୁ ନାନାବାୟା ଗାଇ
ତାଙ୍କରି ଅଭିସାର ପ୍ରମତ୍ତ ଚାହାଁଣୀ ଏଡାଇ
ଖୋଜୁଥାଏ ଚିହ୍ନା ନଈକୂଳ
ଭଲ ଲାଗେ ତାଙ୍କରି ବାହୁବେଷ୍ଟନୀ
ଓଦାଓଦା ଚୁମ୍ବନର ସୂକ୍ଷ୍ମ କାରିଗରୀ ।

ମୁଁ କିନ୍ତୁ ନିରୁଦ୍ଦିଷ୍ଟ ଜନକନ ଅଭୋଗ୍ୟା କୁମାରୀ
ନଈକୂଳ ନାବିକ ବି ଆନମନା ଥିଲା
ଭରା ଜହ୍ନରାତି, ତାଙ୍କୁ କହିଲି ଡଙ୍ଗା ଫିଟା
ଉଚ୍ଛୁର ହେଲାଣି, ନେ ପଛେ ଆଗତୁରା ଡଙ୍ଗାର କଉଡି ।

ନାବିକ ମାରିଲା କାତ ପାଲକୁ ମେଲାଇ
ମୋ ସ୍ମୃତିର ସିନ୍ଦୁକରେ ପ୍ରେମର ବଣିକ
ବ୍ରାହ୍ମଣର ମନ୍ତ୍ର ଉଚ୍ଚାରଣ ପରି ଗମ୍ଭୀର ଶୁଭିଲା
ଧିରେ ଧିରେ ତରଳ ଜଳର ପଥ
ସ୍ମୃତି ସବୁ ଗିଳିଦେଇ ଉଭାହେଲା
ମୋ ନାଭିରୁ ଗଜୁରିଲା ପଦ୍ମଟିଏ
ଶତାବ୍ଦୀର ଅଭିମାନ ପରି
ସମାଧିସ୍ଥ ସବୁ ନଦୀ ଗଛ ଓ ପର୍ବତ
ଯେ ଯାହାର ନିରବତା ଢ଼ାଙ୍କି ଯୋଡିହେଲେ
ପଦ୍ମନାଡ ସହ ଅପରୂପ ଇତିହାସ ପରି ।

ମୁଁ କହିଲି କାଟି ଦିଅ ସୂକ୍ଷ୍ମ ଯୋଗସୂତ୍ର
ନାହି ନାଡ ନଦୀ ସଂଗେ ମୋର
ଭୁଲିଯାଅ ଇତିହାସ ସ୍ମୃତି ଓ ସୃଷ୍ଟିର ଗୁମର
ଭସାଇଦିଅ ବନ୍ୟା ଜଳରେ ଅପରୂପ ଅତିନ୍ଦ୍ରୀୟ ପ୍ରାଣ
ଭୁଲିଯାଅ ଶତାବ୍ଦୀର ମନ୍ତ୍ର ଉଚ୍ଚାରଣ ।

ଗୋଟିଏ ସତ୍ୟ ରୂପରେ ଜୀବନ୍ୟାସ ପାଉ
ପ୍ରକୃତି ପୁରୁଷ ଗଛ ଓ ପର୍ବତ
ଅଂଶୁପା ମୁଁ, ତମରି ଅଂଶ ଢ଼ଳଢ଼ଳ
ସୁନୀଳ ଉପତ୍ୟକାରୁ ହରଣ କରିନିଅ

ସବୁତକ ଅଭିମାନର ପ୍ରାଚୁର୍ଯ୍ୟ
ନାରୀ ମୁଁ ଅପରୂପା ସୁନ୍ଦରୀ
ଅନ୍ଧାର ଭିତରେ ଚକ୍ ଚକ୍ ଲୁହର ଔଜ୍ଜଲ୍ୟ
ଚିରଯୌବନା କୁମାରୀ
ଅକସ୍ମାତ୍ ପାଲଟିଲି ପ୍ରକୃତିର
ଅନାହତ ଶବ୍ଦର ରାଗିଣୀ ।
□□

## ମୃଗୁଣୀ ସ୍ତୁତି

ଆସ,
ହେ ଜଙ୍ଗଲର ଈଶ୍ୱର
ଧ୍ୱଂସ କର ପାପ
ତ୍ରାଣକର ନଶ୍ୱର ଶରୀର;

ଆସ, ମୃଗତୃଷ୍ଣା ସମ
ମହମହ ଚନ୍ଦନର ବାସ୍ନା ପରି
ସୂକ୍ଷ୍ମ କୁଟିକମ
ପାହାଡର ଅଂଧ ନିଦ ଭାଙ୍ଗି
ପାରିଦିଅ କୋମଳ ଘାସର
ଶେଯ,
ଆସ ମହକୁଥାଉ ଦିଗନ୍ତ
ଡହକୁ ଥାଉ ଜୁଇ ଆମର
ପକ୍ଷୀ ଉଡିଯାଉ ପ୍ରବାସକୁ
ଏଠି ନିଆଁ ଓ ବନ୍ଧୁକ ଗର୍ଜନ
ଏଠି ଶିକାରୀର ପାଶ
ଏଠି ପ୍ରତାରଣାର କୋମଳ ଗାନ୍ଧାର ।

ଆସ, ହେ ଜୀବନ ଗଢୁଥିବା
ଈଶ୍ୱର
ପ୍ରିୟତମ ଦୁଃଖ ପରି
କିଶୋରୀର ପ୍ରେମ

॥ ସମୟ କୁହେନା କିଛି ॥

ଆଜି ଏ ଡାଳ ତ କାଲି
ସେ ଡାଳ
ମାଙ୍କଡର ଖେଳ
ପାଦସାରା ପବନର ନୂପୁର
ଦେହସାରା ଅବିଶ୍ୱାସର ଗନ୍ଧ ।

ଆସ, ବୋଲିଦିଅ
ବିଶ୍ୱାସର ନଈ ପାଣି
ଏକଇ ନାଆର ତୁମେ
ଏକଇ ନାଉରୀ
ଯାତ୍ରୀ କାହିଁ ପଥ ଅବା କାହିଁ
ଝରିପଡେ ହାହାକାର
ପାଣି-ନିଆଁ-ପାଶ ଓ ବନ୍ଧୁକ
ଅବିଶ୍ୱାସୀ ଶତ୍ରୁଙ୍କ ବ୍ୟୂହ
ତ୍ରାହି କାହିଁ ମୁକ୍ତି ଅବା କାହିଁ

ହେ ଇଶ୍ୱର !
ସମୟ ସାରା ପରିବ୍ୟାପ୍ତ ନଈ
କେମିତି ଲଙ୍ଘିବି
ପଙ୍ଗୁ ମୁହିଁ ଏକାକୀ ବାଟୋଇ ।

□□

# ନଈ ଋତୁ

ନଈ ଋତୁରେ ସେ ଆସେ
ନଈ ତା' ପାଇଁ ଋତୁଟିଏ
ପ୍ରକୃତିର କାନଭାସରେ
ଅପରୂପା ଚିତ୍ରଟିଏ ।

ବର୍ଷାର ମଧୁର ରାଗିଣୀ
ସେ ଶୁଣେ
ଆକାଶର ଅଗଣାରେ
କୁଢ଼େଇ ଦିଏ
ମଲ୍ଲିଫୁଲର ଗଜରା
ନନ୍ଦିଘୋଷ ତିଆରି
ନ ସରୁଣୁ ଲୋକଙ୍କୁ କୋଳେଇବା ପାଇଁ
ହାତ ଲମ୍ବାଇ ଚାଲିଆସେ କାଳିଆ ।

ଶୀତ ସକାଳର ଜାଡୁଆ ବାଆ
ବସନ୍ତର ଉତ୍ତୀର୍ଣ୍ଣ ମଧ୍ୟାହ୍ନରେ
ଶିର୍‌ଶିରେଇ ଯାଉଥିବା ଦେହ
ପାହାଡ ଶୀର୍ଷରେ ଉଠୁଥିବା
ବର୍ଷା ପରର ଧୂଆଁ
ସବୁ ଏକାଠି ହୋଇ ଆସନ୍ତି
ହାଡଥରା ଶୀତରେ
ଉହ୍ଲେଇ ଚାରିପଟେ

|| ସମୟ କୁହେନା କିଛି ||

ନିଆଁ ପୁହିଁଲା ବେଳେ
ନଈରତୁ ଚୁପ୍‌ଚାପ୍ ଚାଲିଯାଏ
କଥାରେ କଥାରେ ଫଗୁଣ
ରଙ୍ଗ ବଦଳାଏ
ସ୍ମୃତିରେ ସ୍ମୃତିରେ ଅତୀତ
ରଙ୍ଗୀନ ଫୁଲର ବାସ୍ନା ମହକାଏ
ନଈ ତଟରେ କିଶୋରୀ କାଶତଣ୍ଡି
ପବନ ସହିତ ମଜ୍ଜିଥାଏ
ମନ ଦିଆ ନିଆରେ
ଗାଈ ପିଠିର ବଗଟିଏ
ଅନିଶା କରିଥାଏ ଡାଳରେ ଥିବା ବଗୁଲିକୁ ।

ସେମିତି ସେମିତି ବହି ଚାଲିଥାଏ
ନଈର ପାଣି
ପବନ ସହିତ ମିଳାମିଶାରେ
ଗର୍ଭବତୀ ହୁଏ କାଶତଣ୍ଡି
ଜଙ୍ଗଲ ଦାଢ଼ରେ ଗୀତ ଗାଉଥାଏ
ଅଜଣା ପକ୍ଷୀ ବିରହରେ
ଆକାଶରୁ ଓହଳିଥିବା ମେଘ
ଭଞ୍ଜୀୟ ସୁରରେ ଗାଉଥାଏ
ମିଳନର ଗୀତ
ପାହାଡର ନିର୍ଜଳା ଗଛଟିଏ
ଚାହିଁଥାଏ ତଳକୁ
ନଈର ଛାଇକୁ ।

ଏତିକିବେଳେ ସେ ଆସେ
ନଈ ରତୁରେ
ପ୍ରକୃତିର କାନଭାସରେ
ତୂଳି ଚଳେଇ
ସବୁ ସ୍ମୃତି ନଈ ହୋଇ
ବୋହି ଯାଉଥିଲେ ନଈରେ...।
❒❒

# ଗଛ ମୂଳରେ ଜୀବନ

ଗଛ ମୂଳର ଜୀବନ କେମିତି
ମୁଁ ଜାଣେନା,
କିଛି ଦିନ ହେଲା ମୁଁ ଆସିଛି
ଘର ଛାଡ଼ି ଗଛମୂଳକୁ
ଗଛ ଛତା ପରି ମୁଣ୍ଡ ଉପରେ
ମୁଁ ନିଶ୍ଚିନ୍ତ, ବାସ୍ ।

ଦୁଃଖର କଥା ସବୁ କହିଦେବାକୁ
ଇଚ୍ଛା, ଗଛକୁ
ସୁଖର ସ୍ମୃତି ସବୁ ପକ୍ଷୀ ପରି
ଉଡ଼ାଇ ନେବାକୁ ଇଚ୍ଛା, ଆକାଶକୁ !
ୟା' ଭିତରେ ତମେ ଯାଉ ଆଉ ଜଣେ
କିଏ ବସିଛି ମୋ ସାଙ୍ଗରେ
ମୋ ଦୁଃଖଠୁ ତା ଦୁଃଖ ଆହୁରି ଗଭୀର
ଆହୁରି ଗାଢ଼, ମୁଁ ଜାଣିଛି
ସେ କାନ୍ଦ କାନ୍ଦ ଭାବରେ ଆକାଶକୁ
ଚାହିଁଛି ।

ସେଇ କାନ୍ଦୁରା ଚରିତ୍ରଟି ମୋର
ଅତୀତ କି ? ଯିଏ ମୋର ଏକ ଚିତ୍ରପଟକୁ
ଟାଙ୍ଗି ଦେଇଛି ଛାତିରେ
ଘଡ଼ିକୁ ଘଡ଼ି ସେ ଦେଖୁଛି ନିଜକୁ

## ।। ସମୟ କୁହେନା କିଛି ।।

ଆକାଶକୁ, ତମେ ଆଉ ନାହଁ
ରୂପାନ୍ତରିତ ହୋଇଯାଇଛ ଶିଳାଲିପିରେ ।

ଏଇ ଯେଉଁ ସ୍ମୃତି କଥା କହିଲି
ବହି ଆସିଚି ନଈର ଧାରରେ
ଏଇ ଯେଉଁ ଅତୀତ କଥା କହିଲି
ଥୁପି ପଡୁଛି ପକ୍ଷୀର ଚଂଚୁରେ
ସବୁ ତମର ନା ମୋର
ନଈ କୂଳରେ ଘର ତ
ସେ କୂଳକୁ ପହଁରିଯିବାକୁ ହେବ
ନା ଅଛି ଡଂଗା
ନା ଅଛି ନାଉରୀ
ତମ ବିନା ସେ କୂଳକୁ ଯିବାବି
କ'ଣ ଦର୍କାର;
ଶୁଣୁଚ, ଗଛ ମୂଳରେ ଜୀବନ ବିତିଲେ
ତମେ ମନପଡ଼
ନଈବି ।

□□

ଡକ୍ଟର ଫଣୀନ୍ଦ୍ର ଭୂଷଣ ନନ୍ଦ

ସେ କହିଲା ନାଆରେ ଯା'
ବା ବାଆରେ ଯା'
ପାଣିରେ ଯା'
ବା ଆକାଶରେ ଯା'
ମୋ ଆଲିଙ୍ଗନ ଭିତରେ ଯା'
ମୋ ପରଶରେ ଯା'।

ମୁଁ ନଇ ପାଲଟି ପାରୁନଥିଲି
ସେ କିନ୍ତୁ କୂଳ ହୋଇ
ମୋତେ ଆବୋରି ଥିଲା
ମୁଁ ଯେତେ ବହିଲେ
ଯେତେ ଗାଇଲେ
ସବୁଠି ସେ ହିଁ ଥିଲା।




ଲିପିକା
ନିଜିଗଡ଼ କୁରୁଖ, ହରିରାଜପୁର
ଜଟଣୀ, ପୁରୀ- ୭୫୨୦୫୦
ମୋ-୭୦୬୪୭୦୫୨୩୭

₹ ୧୫୦/-